# କଳା କାକଳୀ

## ପାଲା ସ୍ମରଣିକା



ତୃତୀୟ ବାର୍ଷିକ ସଂଖ୍ୟା - ୧୯୮୭

ଶ୍ରୀ ନୀଳାଚଳ ନିଖିଳୋତ୍କଳ ପାଲାଗାୟକ ପରିଷଦ

ସୁନ୍ଦରଗଡ ଶାଖା, ରାଉରକେଲା

# କଳା କାକଳୀ
## ( ପାଲା ସ୍ମରଣିକା )

ତୃତୀୟ ସଂଖ୍ୟା, ୧୯୮୭

★


ସମ୍ପାଦନା :

ଅଧ୍ୟାପକ ରବୀନ୍ଦ୍ର ନାଥ ନାୟକ

ଡାଃ କୃପାସିନ୍ଧୁ ନାୟକ

କବିଭୂଷଣ ଧରିତ୍ରା


★


ଶ୍ରୀ ନିଖିଳୋତ୍କଳ ପାଲା ଗାୟକ ପରିଷଦ
ସୁନ୍ଦରଗଡ଼ ଜିଲ୍ଲା ଶାଖା, ରାଉରକେଲା

★

ମୁଦ୍ରଣ :

ପାରିଜାତ ପ୍ରେସ,

ଗାନ୍ଧୀରୋଡ, ରାଉରକେଲା - ୧୧

ଫୋନ୍ - ୩୨୬୨/୪୩୬୩

★

ମୂଲ୍ୟ - ୪.୦୦ ଟଙ୍କା ମାତ୍ର

# ଶ୍ରୀ ଜଗନ୍ନାଥଙ୍କ
# ପଦାରବିନ୍ଦେ ଭକ୍ତିଅର୍ଘ୍ୟ

ଶ୍ରୀ ନୀଳାଚଳ ନିଖିଳୋତ୍କଳ ପାଲା ଗାୟକ ପରିଷଦ
ସୁନ୍ଦରଗଡ ଶାଖା, ରଉରକେଲା

# ଶ୍ରଦ୍ଧାଞ୍ଜଳି

ଗାୟକ ତିଳକ ଦାମୋଦର ଷଡଙ୍ଗୀ

ଓ

ଗାୟକ ଭୂଷଣ ଘନଶ୍ୟାମ ନାୟକଙ୍କ ବିୟୋଗରେ

ଶ୍ରୀ ନୀଳାଚଳ ନିଖିଳୋତ୍କଳ ପାଲାଗାୟକ ପରିଷଦ

ସୁନ୍ଦରଗଡ ଶାଖା, ରାଉରକେଲା

# ଶ୍ରୀ ନୀଳାଚଳ ନିଖିଳୋତ୍କଳ
# ପାଲା ଗାୟକ ପରିଷଦ
## ସୁନ୍ଦରଗଡ ଶାଖା, ରାଉରକେଲା

ପୃଷ୍ଠପୋଷକ:

ଶ୍ରୀ ଦଳୀପ ରାୟ, ଏମ୍. ଏଲ. ଏ, ରାଉରକେଲା
ଶ୍ରୀ ନଳିନୀ ରଂଜନ ପଟ୍ଟନାୟକ, ଉପ ଆରକ୍ଷୀ ମହା ନିରୀକ୍ଷକ
ଶ୍ରୀ କ୍ଷେତ୍ରବାସୀ କର, ଅତିରିକ୍ତ ଜିଲ୍ଲାପାଳ, ରାଉରକେଲା

ଉପଦେଷ୍ଟା:

ଶ୍ରୀ ବିପିନ ବିହାରୀ ପଣ୍ଡା, ମୁଖ୍ୟ ପ୍ରଶାସନ ଅଫିସର
ଶ୍ରୀ କୁଳମଣି ଦାଶ, ପ୍ରଶାସକ, ଆଞ୍ଚଳିକ ଉନ୍ନୟନ ପ୍ରତିଷ୍ଠାନ, ରାଉରକେଲା
ଶ୍ରୀ ନୃସିଂହଚରଣ ଦାଶ, ଲୋକ ସଂପର୍କ ଅଧିକାରୀ, ସୁନ୍ଦରଗଡ
ଶ୍ରୀ ପ୍ରେମାନନ୍ଦ ମାମଲ, ଓ. ଏ. ଏସ, ଉଦିତନଗର
ଡଃ ପ୍ରଦ୍ୟୁମ୍ନ ସାମନ୍ତରାୟ, ପୋଲି କ୍ଲିନିକ୍, ରାଉରକେଲା-୧
ଡଃ ଶ୍ରୀବତ୍ସ ନନ୍ଦ, ଅଧ୍ୟାପକ, ଆଞ୍ଚଳିକ ଯାନ୍ତ୍ରିକ ମହାବିଦ୍ୟାଳୟ
ଡଃ କୃପାସିନ୍ଧୁ ନାୟକ, ସର୍ଜନ ଏବଂ ଅଙ୍କୁପଂଚର ବିଶେଷଜ୍ଞ, ରାଉରକେଲା- ୧
ଶ୍ରୀ ରବୀନ୍ଦ୍ର ନାଥ ନାୟକ, ମୁଖ୍ୟ ଓଡ଼ିଆ ଅଧ୍ୟାପକ, ସାଂଧ୍ୟ ମହାବିଦ୍ୟାଳୟ
ଶ୍ରୀ ଅଦ୍ୱୈତ ପ୍ରସାଦ ବିଶ୍ୱାଳ
ଶ୍ରୀମତୀ ଶୈଳବାଳା ପୂଜାରୀ, ଆଡଭୋକେଟ୍
ଶ୍ରୀମତୀ ପ୍ରତୀମା ତ୍ରିପାଠୀ, ରାଉରକେଲା ୧
ଶ୍ରୀ ବେଣୁଧର ସାମଲ, ଉଦିତନଗର
ଶ୍ରୀ ରାଜୀବ ପାଣି, ରାଉରକେଲା-୨
ଶ୍ରୀ ସଦାନନ୍ଦ ରାୟ, ସେକ୍ଟର-୬
ଶ୍ରୀ ବଳରାମ ସ୍ୱାଇଁ ଆର.ଟି.ଓ ଅଫିସ ରାଉରକେଲା-୧୨
ଶ୍ରୀ ବୈରାଗୀ ଚରଣ ଦଳାଇ, କୋଅପରେଟିଭ ସୋସାଇଟ,
ଫେଡେରେସନ ଅଫିସ ରାଉରକେଲା- ୧
ଶ୍ରୀ ନଟବର ଦଳାଇ, ବେଦବ୍ୟାସ ଛକ, ରାଉରକେଲା-୪

# ସଭ୍ୟ ସୂଚୀ ଗାୟକ, ବାଦ୍ୟକ ସଙ୍ଘ

| କ୍ର. ନଂ. | ନାମ | |
|---|---|---|
| ୧ । | ସର୍ବଶ୍ରୀ ପଦ୍ମଲୋଚନ ପାଣିଗ୍ରାହୀ | (ଗାୟକ) |
| ୨ । | ଶ୍ରୀଚରଣ ପରିଡ଼ା | ,, |
| ୩ । | ବିଷ୍ଣୁ ଚରଣ ତ୍ରିପାଠୀ | ,, |
| ୪ । | ଉଦୟନାଥ ସାହୁ | ,, |
| ୫ । | ରାମଚନ୍ଦ୍ର ରଥ | ,, |
| ୬ । | ପ୍ରଫୁଲ୍ଲ କୁମାର ଆଚାର୍ଯ୍ୟ | ,, |
| ୭ । | ହରିହର ବେହେରା | ,, |
| ୮ । | ଉପେନ୍ଦ୍ରନାଥ ଜେନା | ,, |
| ୯ । | ଫକୀର ମୋହନ ଦାଶ | ,, |
| ୧୦ । | ରତ୍ନାକର ମୁଦୁଲି | ,, |
| ୧୧ । | ପଦ୍ମଲୋଚନ ପଣ୍ଡା | ,, |
| ୧୨ । | ଉପେନ୍ଦ୍ର ନାଥ ଦାଶ | ,, |
| ୧୩ । | ଭୁବନେଶ୍ୱର ବେହେରା | ,, |
| ୧୪ । | ବୈକୁଣ୍ଠ ବିହାରୀ ନାଥ | (ବାଦ୍ୟକ) |
| ୧୫ । | ପଦ୍ମଚରଣ ବେହେରା | ,, |
| ୧୬ । | ବାଞ୍ଛା ଚରଣ ଦାସ | ,, |
| ୧୭ । | ଗୋବିନ୍ଦ ଚନ୍ଦ୍ର ନାୟକ | ,, |
| ୧୮ । | ଶ୍ରୀ ଭବଗ୍ରାହୀ ସେଠୀ | ,, |
| ୧୯ । | ସୁବାଷ ଚନ୍ଦ୍ର ନାଥ | ,, |

| | | |
|---|---|---|
| ୨୦ । | ସର୍ବଶ୍ରୀ ପରେଶ କୁମାର ପାଢ଼ | (ବାଦ୍ୟକ) |
| ୨୧ । | ଦୁର୍ଗା ଚରଣ ବେହେରା | ,, |
| ୨୨ । | ଭୀମସେନ ବାରିକ | (ସଂଗୀତ) |
| ୨୩ । | ଜଗନ୍ନାଥ ସାମଲ | ,, |
| ୨୪ । | ଗଙ୍ଗାଧର ପଣ୍ଡା | ,, |
| ୨୫ । | ବ୍ୟାସଦେବ ରାୟ | ,, |
| ୨୬ । | ହୃଷିକେଶ ପଣ୍ଡା | ,, |
| ୨୭ । | ପ୍ରଫୁଲ୍ଲ କୁମାର ମହାରଣା | ,, |
| ୨୮ । | ଭ୍ରମରବର ନାୟକ | ,, |
| ୨୯ । | ପୂର୍ଣ୍ଣଚନ୍ଦ୍ର ମଉରଜସିଂ | ,, |
| ୩୦ । | ଅଭିମନ୍ୟୁ ବେହେରା | ,, |
| ୩୧ । | ଶରତ ଚନ୍ଦ୍ର କର | ,, |
| ୩୨ । | ବିଦ୍ୟାଧର ବାରିକ | ,, |
| ୩୩ । | ଶ୍ରୀ ଉପେନ୍ଦ୍ର ଶରଣ | ,, |
| ୩୪ । | ଶ୍ୟାମସୁନ୍ଦର ପାତ୍ର | ,, |
| ୩୫ । | ବିରଞ୍ଚି ମିଶ୍ର | ,, |
| ୩୬ । | ଧନଞ୍ଜୟ ବେହେରା | ,, |
| ୩୭ । | ରବିନ୍ଦ୍ର ଦାସ | ,, |
| ୩୮ । | ଶ୍ୟାମସୁନ୍ଦର ନାୟକ | ,, |
| ୩୯ । | ଭଗବାନ ପ୍ରଧାନ | ,, |
| ୪୦ । | ସୁରଥ ଚନ୍ଦ୍ର ନାଥ | ,, |
| ୪୧ । | ଫକୀର ମୋହନ ସୁନା | ,, |

●

# — ସୂଚୀପତ୍ର —

ଶ୍ରୀ ଗୋଲକ ଚନ୍ଦ୍ର ପ୍ରଧାନ
ଦ୍ୱିତୀୟ ଭଞ୍ଜ ମହାକବି

ମୁ/ପୋ. ଗୋପାଳପୁର
ଜି.- କଟକ

# ସନ୍ଦେଶ

ଆପଣଙ୍କ ପରିଷଦର ମୁଖପତ୍ର 'କଳା କାକଳୀ' ଆତ୍ମପ୍ରକାଶ କରୁଥିବା ଜାଣି ବିଶେଷ ଆନନ୍ଦିତ । ଗାୟକମାନେ ତ ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିର ସଂରକ୍ଷକ ଭାବେ ପ୍ରଚାର ଓ ପ୍ରସାର କରି ମହତ୍ କର୍ମରେ ଲିପ୍ତରହି ଅଛନ୍ତି । ସାହିତ୍ୟର ଓ ସଂସ୍କୃତିର ପ୍ରଚାର ମାଧ୍ୟମରେ ଏହା ଏକ ଅତ୍ୟନ୍ତ ଉପାଦେୟ ସ୍ଥାନର ଅଧିକାରୀ ।

ଆପଣ ମାନଙ୍କର ମୁଖପତ୍ର 'କଳା କାକଳୀ' ଏ ଦଗରେ ବିଶେଷ ସହାୟକ ହେବ ଏହା ମୋର ବିଶ୍ୱାସ ଓ କାମନା । 'କଳା କାକଳୀ' ସାହିତ୍ୟ ଓ ସଂସ୍କୃତିର ସଂରକ୍ଷଣରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରି ଜୟଶ୍ରୀ ମଣ୍ଡିତ ହେଉ ।

ବର୍ତ୍ତମାନ ମୁଁ ଜରବ୍ୟାଧି ପ୍ରପୀଡ଼ିତ, ଦୃଷ୍ଟିଶକ୍ତି ଅତି କ୍ଷୀଣ । ପ୍ରବନ୍ଧ ଲେଖି ପଠାଇବାକୁ ସକ୍ଷମ ହୋଇ ପାରୁନାହିଁ ।

ଆପଣଙ୍କୁ, ଆପଣଙ୍କର ପରିଷଦର ସଭ୍ୟ ତଥା ପରିଷଦର ପୃଷ୍ଠ-ପୋଷକ ବିଦ୍ୱାନ ବନ୍ଧୁମାନଙ୍କୁ ମୋର ସଶ୍ରଦ୍ଧ ହାର୍ଦ୍ଦିକ ଶୁଭେଚ୍ଛା । ଆପଣଙ୍କର ଅନୁଷ୍ଠାନ ତଥା ପତ୍ରିକାର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

ଗୁଣମୁଗ୍ଧ ଶୁଭକାଂକ୍ଷୀ
ସ୍ୱା/ ଗୋଲକ ଚନ୍ଦ୍ର ପ୍ରଧାନ

Binod Chandra Naik
M.A. (Pat), M A. (Utk), D Litt.
Principal, Brajarajnagar College
BRAJARAJNAGAR

Dt· 17-2-87

# ବାର୍ତ୍ତା

କଳା- ଦିଗନ୍ତ ବିସ୍ତାରୀ ଏକ ସାଗର ଯେମିତି । ତାର ସଫେଦ ଆସ୍ତରଣରେ ସ୍ପିଡ୍‌ବୋଟ୍‌ରେ ଏକଲକ୍ଷ କିଲୋମିଟର ବେଗରେ ଗତିକରି ଅପର ତଟ ଭୂମିରେ ଅବତରଣ କରିଗଲେ କିନ୍ତୁ ତାର ପରିଚୟ ମିଳେନା ।

ବରଂ ଡୁବୁରୀ ହୋଇ ନିମ୍ନଗାମୀ ହେଲେ ସବୁଜାଭ ଜଳଦ, ଉଜ୍ଜ୍ୱଳ ଲୁଣି ଅନ୍ଧକାର, ଲକ୍ଷ ଲକ୍ଷ ନବମ ପରିଶ୍ରୁତ ଆଲୋକର ସର୍ପିଳ ଝିଲ୍‌ମିଲ୍ ଖେଳ ନେଇ ଶରୀରରେ ପ୍ରଲେପ ମିଳେ ନୀଳକ୍ଷୀର ସମ ଜଳର । ଜୀବନ ଘରିପାଖେ ସାଗର ପରି କଳାର ଏଇପରି ବ୍ୟାପ୍ତି ହିଁ- ଆନନ୍ଦ ।

ପାଲି, ଭଜନର କଳାର ପଟ୍ଟଭୂମିରେ ଉତ୍କୀର୍ଣ୍ଣ— ସଂସ୍କୃତି ଓ ଧର୍ମର ସମନ୍ୱୟରେ ଭର୍ତ୍ତିତ । ସୁନ୍ଦରଗଡ଼ ପାଲି ଗାୟକ ପରିଷଦ ଏହାର ବିସ୍ତୀର୍ଣ୍ଣତା ନେଇ କେବଳ ନୁହେଁ, ତାହାର ଅପ୍ରୁତ ଗଭୀରତା ଉପଲବ୍ଧି କରିବାରେ ଆତ୍ମନିବେଦିତ । 'କଳା କାକଳୀ' ତାର ମନ୍ଦ୍ରନାଦର ପ୍ରତିଧ୍ୱନି ।

'କଳା କାକଳୀ ପୂଜାପୀଠରେ ପୁଷ୍ପଚନ୍ଦନର ବର୍ଷଣ ହେଉ ।

ସ୍ୱା/ ବିନୋଦ ଚନ୍ଦ୍ର ନାୟକ

**CENTRAL INSTITUTE OF INDIAN LANGUAGES**
(Ministry of Education and Culture, Government of India)
Manasagangotri, MYSORE - 570 006.

**Dr. D. P. Pattanayak**
Director

No. F. 1-1/87 Feb. 24, 1987

## ଶୁଭେଚ୍ଛା ବାର୍ତ୍ତା

ଶ୍ରୀ ନୀଳାଚଳ ନିଖିଳୋତ୍କଳ ପାଲା ଗାୟକ ପରିଷଦ ଆୟୋଜନରେ ଏବର୍ଷ ପାଲା ଗାୟକ ସମ୍ମେଳନ ମାର୍ଚ୍ଚ ୧୯ ତାରିଖରେ ହେବାର ଜାଣି ଅତ୍ୟନ୍ତ ଖୁସି ଲାଗିଲା । ଏଇ ଅବସରରେ ପରିଷଦର ମୁଖପତ୍ର ପ୍ରକାଶ ପାଇବ ଶୁଣି ଏ ଖୁସି ଶତଗୁଣ ହେଲା । ପାଲା ଓଡ଼ିଆ ଜାତୀୟ ଜୀବନର ଏକ ବିଶିଷ୍ଟ ସାଂସ୍କୃତିକ ଅଙ୍ଗ । ଏହାକୁ ବଞ୍ଚାଇ ରଖିବାକୁ ସବୁମତେ ଚେଷ୍ଟା ହେବା ପ୍ରୟୋଜନ । ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରଚାର ପ୍ରସାର ଦିଗରେ ପାଲା ଗାୟକଙ୍କର ଦାନ ଓଡ଼ିଆ ଅଧ୍ୟାପକଙ୍କ ତୁଳନାରେ କିଛି କମ୍ ନୁହେଁ । ପାଲା ଗାୟନକୁ ସାମାଜିକ ସ୍ୱୀକୃତି ଦେବାପାଇଁ ସରକାରୀ ଉଦ୍ୟୋଗର ପ୍ରୟୋଜନ ।

ମୁଁ ସମ୍ମେଳନର ସାର୍ଥକତା କାମନା କରୁଛି । 'କଳା କାକଳୀ' କଳାଶ୍ରୀ ମଣ୍ଡିତ ହୋଇ ଆପଣା ନାଁ ସାର୍ଥକ କରୁ, ଏହାହିଁ ଜଗନ୍ନାଥଙ୍କଠାରେ ଜଣାଣ ।

ସ୍ୱା/ ଦେବୀପ୍ରସନ୍ନ ପଟ୍ଟନାୟକ

# ଆମର କୃତଜ୍ଞତା

ଶ୍ରୀ ଶ୍ରୀ ନୀଳାଚଳ ନିଖିଳୋତ୍କଳ ପାଲା ଗାୟକ ପରିଷଦ, ସୁନ୍ଦରଗଡ଼ ଶାଖା, ରାଉରକେଲାର ବାର୍ଷିକୋତ୍ସବରେ ଯୋଗଦାନ କରିଥିବା ସମସ୍ତ ଅତିଥି, ସ୍ମରଣିକାରେ ପ୍ରକାଶ ପାଇଁ ଦେଇଥିବା ଲେଖାର ଲେଖକ ମାନଙ୍କୁ, ଅନୁଷ୍ଠାନର ଶୁଭକାମନା କରି ପଠାଇ ଥିବା ଶୁଭେଚ୍ଛା ବାର୍ତ୍ତା ପାଇଁ ବରିଷ୍ଠ ବ୍ୟକ୍ତିମାନଙ୍କୁ, ଆର୍ଥିକ ସାହାଯ୍ୟ ତଥା ବିଜ୍ଞାପନ ଦେଇଥିବା ବ୍ୟକ୍ତି ଏବଂ ଅନୁଷ୍ଠାନ ମାନଙ୍କୁ, ଏହି ସ୍ମରଣିକାକୁ ପ୍ରକାଶ କରିଥିବା ପାରିଜାତ ପ୍ରେସ୍‌ର ମାଲିକ ଓ କର୍ମଚାରୀ ମାନଙ୍କୁ ତଥା ଏହି ଅନୁଷ୍ଠାନକୁ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭବେ ସାହାଯ୍ୟ କରିଥିବା ସମସ୍ତ ବ୍ୟକ୍ତି ଓ ଅନୁଷ୍ଠାନକୁ ଆମେ ଆମର ବିନମ୍ର କୃତଜ୍ଞତା ଜଣାଉଛୁ ।

ଶ୍ରୀ ଶ୍ରୀଚରଣ ପରିଡ଼ା  
ସାଧାରଣ ସଂପାଦକ  
ଶ୍ରୀ ନୀଳାଚଳ ନିଖିଳୋତ୍କଳ  
ପାଲାଗାୟକ ପରିଷଦ,  
ସୁନ୍ଦରଗଡ଼ ଶାଖା, ରାଉରକେଲା ।

## ସମ୍ପାଦକଙ୍କ କଲମରୁ



# ଆମ୍ଭ ନେପଥ୍ୟ

ଭାରତୀୟ ସଭ୍ୟତା ଧର୍ମ ଦ୍ୱାରା ପରିପୁଷ୍ଟ, ଭାରତୀୟ ଜୀବନବୃକ୍ଷରେ ଧର୍ମ ପିଣ୍ଡିତ ଧ୍ୟାନ ଧାରଣା ଏକ ବିରାଟ ବଟ ଦ୍ରୁମ ପରି ସଂସ୍କୃତି ଗଠନକରି ଶାଖା ପ୍ରଶାଖା ମେଲିବାରେ ଲାଗିଛି । ଏହାର କଳନା କରିବା ଓ ଜାତକ ଖୋଜିବା ସାଧାରଣ ବୁଦ୍ଧିଜୀବୀ ମଣିଷ ନିକଟରେ ଏକ ଦୁଷ୍କର କର୍ମ । ଜୀବନ ବ୍ୟାପୀ ଗବେଷଣା ଏଥିପାଇଁ ସାମାନ୍ୟ ମାତ୍ର । ଆଜି ସହଜରେ ବୁଝି ହୁଏ ଯେ ଭାରତ ବର୍ଷ ପରି ଏକ ଉପମହାଦେଶରେ ଧର୍ମହିଁ ସବୁକୁ ଧରି ରଖିଛି—ଆପଣାର କରି ନେଇଛି । ତେଣୁ କୁହାଯାଏ 'ଧାରୟତି ଇତି ଧର୍ମ' ଯାହାର ଧାରଣ କରି-ବାର କ୍ଷମତା ଅଛି ତାହାହିଁ ଧର୍ମ । ନିକଟ ଅତୀତରେ ପଡ଼ୋଶୀ ମାର୍କସବାଦୀ ରାଷ୍ଟ୍ରର ରାଷ୍ଟ୍ରନାୟକ ଭାରତ ଭ୍ରମଣ କରି ସାରିବା ପରେ ତାଂକର ଅନୁଭୂତି ବର୍ଣ୍ଣନା' କରି କହିଥିଲେ ଯେ ଈଶ୍ୱର ବୋଲି ଜଣେ କେହି ଅଛନ୍ତି । ଯେକି ଭାରତବର୍ଷକୁ ପରିଚାଳନା କରୁଛନ୍ତି ପ୍ରକାରାନ୍ତରେ ଈଶ୍ୱର ବିଶ୍ୱାସ କେବଳ ଭାରତରେ ହିଁ କରା ଯାଇ ପାରେ । ଅନ୍ୟ କେଉଁଠାରେ ଥାଆନ୍ତୁବା ନ ଥାଆନ୍ତୁ ଭାରତରେ ହିଁ ଈଶ୍ୱରଙ୍କ ଆସ୍ଥାନ ସୁଦୃଢ଼ । ଏତେ ଜାତି, ଏତେ କିସମର ପ୍ରବୃତ୍ତି; ଭିନ୍ନ ଚଳଣୀ, ଭାଷା, ସଂସ୍କାର ଆଦିର ବିଭିନ୍ନତାର ଏକାକାର କେବଳ ଭାରତରେ ହିଁ ହୋଇ ପାରିଛି । ଏହା ଆଜିର ନୁହେଁ ବହୁ କାଳରୁ ।

ଆଜି ପ୍ରଶ୍ନ ଉଠୁଛି ପରସ୍ପର ମଧ୍ୟରେ ସାମାନ୍ୟ ବୁଝାମଣାର ଅଭାବରୁ ସାଂପ୍ରଦାୟିକତାର, ଜାତି ଭେଦର, ବର୍ଣ୍ଣଭେଦର, ଧର୍ମଭେଦର । କେଉଁ ଅନାଦି କାଳରୁ ବହୁ ଧର୍ମ, ବହୁ ଈଶ୍ୱର, ବହୁ ସଂପ୍ରଦାୟ ମଧ୍ୟରେ ଏକତାର ଏକ ସୁଦୃଢ଼ ସାଲିସ୍ ହୋଇ ସାରିଥିଲା । ଶକ୍, ହୁନ, ମୋଗଲ୍, ପଠାଣ,

ପାର୍ଶୀ, ଚୀନୀ, ପର୍ତ୍ତୁଗୀଜ, ଇଂରେଜ ପରି ସ୍ୱାଭିମାନୀ ଦୁର୍ଦ୍ଧର୍ଷଜାତି ଇତ୍ୟାଦଙ୍କର ଆଦର୍ଶକୁ ପଇଠ କରି ଭାରତର ସାଧାରଣ ଜନତା ନିଜ ମଧ୍ୟରେ ଓ ସଂସ୍କୃତିର ଗଡ଼ଖାଇରେ କାବୁ କରିଦେଇ ସ୍ୱାଭିମାନର ବୈଜୟନ୍ତୀ ଉଡ଼ାଇ ପାରିଥିଲା । ଦୁଃଖ କଷ୍ଟ, ଅତ୍ୟାଚାର ସହି ମଧ୍ୟ ନିଜତ୍ୱକୁ ଜଳାଞ୍ଜଳି ଦେଇ ନାହାଁନ୍ତି ଭାରତୀୟ ଜନତା । ଖ୍ରୀଷ୍ଟ, ଜୀନ, କନ୍‌ଫୁସିଅସ, ଜୋରେଷ୍ଟୋର ମହମ୍ମଦଙ୍କ ଆଦର୍ଶ ସହିତ ଭାରତୀୟ ସନାତନ ସତ୍ୟର ଔଜ୍ଜ୍ୱଲ୍ୟ ସଦାସର୍ବଦା ବିକଶିତ ହୋଇଛି ସିନା ମଳିନ ହେବାର ସାମୟିକ ଦୃଷ୍ଟାନ୍ତ ନାହିଁ । "ଏକୋଽହଂ ବହୁସ୍ୟା ପ୍ରଜାୟ୍ୟାଃ" ନୀତିରେ ପଢ଼ ଈଶ୍ୱର ବହୁଧାପରିଣତ ହୋଇଛନ୍ତି ସଂସ୍କୃତିର ଅଙ୍ଗ ପ୍ରତ୍ୟଙ୍ଗ ଭିତରେ । ସନାତନ କାଳରୁ ଧର୍ମ ଜାବୁଡ଼ି ଧରିଛି ସଭ୍ୟତାକୁ, ସଂସ୍କୃତିକୁ ଓ ସର୍ବୋପରି ସାହିତ୍ୟକୁ । ଅକ୍ଷର, ଭାଷା, ସାହିତ୍ୟ ମଧ୍ୟରେ ଈଶ୍ୱର ନାମଧେୟ 'ସର୍ବଶକ୍ତିର ମୂଳାଧାର' ବିଦ୍ୟମାନ ଥିବାର ପ୍ରମାଣରୁ ଭାରତ ବର୍ଷରେ ସଭ୍ୟତା ଓ ସଂସ୍କୃତିର ବିକାଶ । ଏହାର ଆଦ୍ୟ ପର୍ବ କେଉଁ ସୁଦୂରରେ ନିହିତ ତାହା କଳନା କରିବା ଆମ ଶକ୍ତିର ବାହାରେ । ଭାରତୀୟ ସନାତନଧର୍ମର ଚେର କେତେ ଗଭୀରରେ ତାହା ଯେପରି ମୂଳା-ଧାରଙ୍କୁହିଁ ଗୋଚର । ଯେହେତୁ ଭାରତ ଭିତରେଥାଇ ସେ(ଶକ୍ତିବନ୍ତ) କେତେ-ବେଳେ ଜଗତରେ ନାଥ ତ କେତେବେଳେ ବିଶ୍ୱନାଥ, କେତେବେଳେ ଆଖଣ୍ଡଳମଣି ତ କେତେବେଳେ ତ୍ରିପୁର ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ) ପତି ବା ତ୍ରିପତି (ତିରୁପତି) ନାଥ । ସେ ପୁଣି ଅବାଙ୍‌ମାନସଗୋଚର । ପାଦ ନଖ ଛଟାର ମହିମା ବର୍ଣ୍ଣନା କରିବାକୁ ଯାଇ ଋକ୍, ସାମ, ଯଜୁ, ଅଥର୍ବ ଛବିବେଦ ଲେଖା ହେଲା ତେବେବି ମହିମା ବର୍ଣ୍ଣିବାକୁ ଲେଖା ନିଅଣ୍ଟ ।

"ରୁଚିର ଚରଣ ନଖ ଛଟାର ମହିମା
ଋକ୍ଷ ସଂଖ୍ୟା କଲେ କଳି ନ ପାଇଲେ ସୀମାହେ ।"

---- ଅଭିମନ୍ୟୁ ।

ଭାରତବର୍ଷରେ ବୌଦ୍ଧିକତାର ସୃଷ୍ଟି ହେଲା କେବଳ ସତ୍ୟର ଅନୁ-ସନ୍ଧାନରୁ । ସତ୍ୟାନୁସନ୍ଧିତ୍ସା ଯେପରି ଯୁଗପତ୍ ଭାରତୀୟ ମାନଙ୍କର ପରଂପରା ସିଦ୍ଧ ପ୍ରବୃତ୍ତି । ଏହି ପ୍ରବୃତ୍ତିରୁ ଜନ୍ମନିଏ ଆବେଗ । ଆବେଗ ଧର୍ମରୁ ସୃଷ୍ଟି ହେଲା ସାହିତ୍ୟ । ଯେଉଁତେବେଳେ ବେଦଠାରୁ ପୁରାଣ ପର୍ଯ୍ୟନ୍ତ ଯାହା ଲେଖା ହେଲା ତାହାହେଲା ଆବେଗ ଧର୍ମୀ ସାହିତ୍ୟ । ଏହି ସାହିତ୍ୟ ଲୋକ ଚଳଣୀ ସହିତ

ମିଶି ଏକାକାର ହେଲା । ଆଜି ତାହାକୁ ଲୋକ ସାହିତ୍ୟ, ଷଟତ୍ରବର୍ଣ୍ଣା ଲୋକ-ସଂସ୍କୃତିର ବିକାଶ କଲା । ଧର୍ମରୁ ପଦ୍ୟ, ପଦ୍ୟରୁ ନାଟକ, ନାଟକରୁ ଅଭିନୟ । ସହିତ ତାଳଦେଇ ସଂଗୀତ ଏକ ସ୍ୱୟଂସଂପୂର୍ଣ୍ଣ ବେଦ ସୃଷ୍ଟି କଲା ଯାହା ଆଜି ପଞ୍ଚମବେଦ ବୋଲି କୁହାଯାଏ । ସବୁ କିଛି ହେଲା ପରମ୍ପରସିଦ୍ଧ ସତ୍ୟ । ସତ୍ୟ ସହିତ ଜୀବନର ମୂଲ୍ୟବୋଧ ମିଶି ମଣିଷକୁ ଧର୍ମନିଷ୍ଠ ପ୍ରାଣୀରେ ପରିଣତ କଲା ।

ବୈଧାନିକ ପ୍ରମାଣରୁ ଜାଣିହୁଏ ଓଡ଼ିଶାରେ ଧର୍ମ ଧାରଣାର ସ୍ୱୟଂ ସମ୍ପୂର୍ଣ୍ଣ ବିକାଶ କାଳ ଅଷ୍ଟମ ନବମ ଶତାବ୍ଦୀ । ଶୈଳୋଦ୍ଭବ ବଂଶୀୟ ରାଜା-ମାନେ ତନ୍ତ୍ର ବିଶ୍ୱାସୀ ଓ ଯୋଗୀ ଉପାସକ ହୋଇ ଓଡ଼ିଶାର ବାୟୁ ମଣ୍ଡଳକୁ ଧାର୍ମିକ ପରିବେଶର ଅନୁକୂଳ କରି ପକାଇଥିଲେ । ସେହିଦିନ ଠାରୁ ଓଡ଼ିଶାର ନିଜସ୍ୱ ଭାଷାରେ ଧର୍ମାନୁକୂଳ ସାହିତ୍ୟ ସର୍ଜନା ହୋଇ ଚାଲିଛି । ପ୍ରାକ୍ ସାରଳା ଯୁଗରୁ ପ୍ରାକ୍ ରାଧାନାଥୀ ଯୁଗ ପର୍ଯ୍ୟନ୍ତ ଯେଉଁ ସାହିତ୍ୟ ସର୍ଜନା ପରିଲକ୍ଷିତ ହୋଇଥାଏ ସେଥିରେ ଧର୍ମ ଓ ଈଶ୍ୱର ଭିନ୍ନ ଭିନ୍ନ ରୂପରେ ସାହିତ୍ୟ ରଚନାରେ ପ୍ରତିଭାତ ହୋଇଛନ୍ତି । ବୈଷ୍ଣବ ସାହିତ୍ୟରେ ଧର୍ମ ଧାରଣା ଆହୁରି ପ୍ରାଞ୍ଜଳ ଓ ଭାସ୍ୱର । ଏ ସମସ୍ତ ସାହିତ୍ୟ ସୃଷ୍ଟିର ଏତେ ବେଶୀ ବହୁଳ ପ୍ରଚାର ଓ ପ୍ରସାର ରହି ଆସିଛି ଯେ ଆଜିର ସାହିତ୍ୟ ତାର କାଣିଚାଏ ସୁଦ୍ଧା ପ୍ରଚାର ସମ୍ଭବ ହୋଇ ପାରୁନାହିଁ । ସେତେବେଳେ ମୁଦ୍ରାଯନ୍ତ୍ର ଅନାବିଷ୍କୃତ । ବହି ନଥିଲା, ୨/୪ ଟା ପୋଥିଥିଲେ ଥାଇପାରେ । ମାତ୍ର ଲକ୍ଷାଧିକ ଲୋକଙ୍କ ପାଖରେ ପହଞ୍ଚି ଯାଉଥିଲା । ପ୍ରଚାରର ଯେଉଁ ମାଧ୍ୟମ ଥିଲା, ତାହା ଉତ୍କୃଷ୍ଟ ଧରଣର । ଆଜି ସେହି ଶକ୍ତିଶାଳୀ ମାଧ୍ୟମ ଗୁଡ଼ିକ ଲୋକ ସଂସ୍କୃତି, ଆବେଗଧର୍ମୀ ଲୋକ ସାହିତ୍ୟ, ଲୋକନାଟ୍ୟ ଓ ଲୋକନୃତ୍ୟ ଆଦି କହି ନାକ ଟେକା ଯାଉଅଛି । ‘ପାଲା’ ତନ୍ମଧ୍ୟରୁ ଏକ ଶକ୍ତିଶାଳୀ ଅଙ୍ଗ ହୋଇ ରହିଛି । ଓଡ଼ିଶାରେ ପାଲା ଏତେ ପରିଚିତ ଯେ ଏପରି କୌଣସି ଗାଁ ନାହିଁ ଯେଉଁଠାରେ ‘ସତ୍ୟନାରାୟଣ ଠିଆ ପାଲା’ ନହୋଇଛି ଓ ନହେଉଛି । ଅଦ୍ୟାବଧି ଏହାର ସ୍ୱାତନ୍ତ୍ର୍ୟ ଓଡ଼ିଶାରେ କେବଳ ସୁରକ୍ଷିତ । ଯେପରିକି ମଣିଷର ଜନ୍ମ ଜାତକ ସହିତ ଜଡ଼ିତ ଏକ ସ୍ୱଭାବ ସିଦ୍ଧ ପରମ୍ପରା ।

କେହି କେହି ମୁସଲମାନ ଓ ହିନ୍ଦୁ ଧର୍ମ ସହିତ ଏକ ଧାର୍ମିକ ସାଲିସ୍‌ରୁ ପାଲାର ଜନ୍ମ ବୋଲି କହିଥାନ୍ତି । ଏହା ସମ୍ପୂର୍ଣ୍ଣ ଅନୁମାନ ମାତ୍ର । ସତ୍ୟତା

ଟିକେହେଲେ ନାହିଁ । ସ୍କନ୍ଧ ପୁରାଣର ରେଖାଖଣ୍ଡ ଯେଉଁ ସତ୍ୟ ପ୍ରକାଶ କରିଥାଏ ତାହା ସମ୍ପୂର୍ଣ୍ଣ ସତ୍ୟ ନହେଲେ ହେଁ ଓ ସତ୍ୟର ନିକଟତମ ତଥ୍ୟ ବୋଲି ଆମର ବିଶ୍ୱାସ । ସମସ୍ତ ଲୋକନାଟକ ମଧ୍ୟରେ ପାଲା ଶ୍ରେଷ୍ଠ । ଏହାର ଶ୍ରେଷ୍ଠତ୍ୱ ଅଦ୍ୟାବଧି ସୁରକ୍ଷିତ ହୋଇ ଆସିଛି । ମାତ୍ର ସଂସ୍କୃତିରେ ଓ ସଭ୍ୟତାର ଅବକ୍ଷୟ ଆସିଲେ ତାହା ସବୁ ଶାଖାକୁ ସଂକ୍ରମିତ କରେ । ସବୁ କ୍ଷେତ୍ରରେ ଅବକ୍ଷୟର ସୂଚନା ମିଳିଥାଏ । ସେହିପରି ପାଲା ଅନୁଷ୍ଠାନମାନଙ୍କୁ ସଂକ୍ରମିତ ନହେବ କିପରି ? ଏଥିପାଇଁ କ୍ଷୋଭର କାରଣ ନାହିଁ । ପ୍ରାଚୀନ ସାହିତ୍ୟ ବଞ୍ଚିତ— ବଞ୍ଚିଲା ପରି ବଞ୍ଚିବ । ତାହାର ପାଳନ କର୍ତ୍ତାର ପଟଭୂମିକାରେ ଅଦ୍ୟାବଧି ଅଭିନୟ କରୁଥିବା ମୋ ଓଡ଼ିଶାର ୫୦୦୦ ପାଲାକାର ଅଛନ୍ତି । ପାଲାପରି ଏକ ଯୌଗିକ କଳା (Composit Art)ର ଅବସାନ ଅସମ୍ଭବ । ଅଗଣିତ ବୁଦ୍ଧି- ଜୀବୀ, ଅର୍ଦ୍ଧଶିକ୍ଷିତ, ଅଶିକ୍ଷିତ ଜନସାଧାରଣଙ୍କର ଯେଉଁମାନେ ସଦା ସର୍ବଦା କଣ୍ଠହାର ହୋଇ ରହିଛନ୍ତି ସେମାନେ ରହିଥିଲେ ଯୁଗଯୁଗକୁ, ଅନାଘ୍ରାତ ଭବିଷ୍ୟକୁ । ଏ ସମ୍ପର୍କରେ ଆମେ ସମଧିକ ଆଶାବାନ ।

'କଳା କାକଳୀ' ନିଖିଳ ଉତ୍କଳ ପାଲା ଗାୟକ ସଙ୍ଘ, ସୁନ୍ଦରଗଡ ଶାଖାର ମୁଖପତ୍ର । ଏହା ତୃତୀୟ ସଂଖ୍ୟାରେ ପଦାର୍ପଣ କରୁଅଛି । ପାଲାକାର ମାନଙ୍କର ଆନ୍ତରିକ ନିଷ୍ଠା ଓ ଆସ୍ତିକତାର ଏହା ସ୍ମାରକୀ ହୋଇ ରହିବ । ବହୁ ମାନ୍ୟଗଣ୍ୟ ଆଲୋଚକଙ୍କର ସଦୀପ୍ତ ଆଲୋକରେ ଏହା ଆଲୋକିତ । 'ଅସତୋ ମା ସଦ୍‌ଗମୟ' ଆଦର୍ଶରେ ଅନୁପ୍ରାଣୀତ ସଜ୍ଜନଙ୍କର ଏହା ଧ୍ୟେୟ ହେବ ଏ ସମ୍ପର୍କରେ ଆଦୌ ସନ୍ଦେହ ନାହିଁ । 'କଳାର କାକଳୀ' ଯୁଗପତ୍ ଅନୁରଣିତ ହୋଇ ଓଡ଼ିଆର ଜାତି ପ୍ରାଣତାରେ ଅପୂର୍ବ ଭବିଷ୍ୟ-ସ୍ପନ୍ଦନ ସୃଷ୍ଟି କରିବ ବୋଲି ଆଶା ରଖୁଛୁ ।

ଓଡ଼ିଆ ଲୋକ ସଂସ୍କୃତିର ସୁଦୂର ବାହକ ଓ ଅନ୍ୟତମ ଉଦ୍‌ଗାତା, ଏକ ନିଷ୍ଠ ଦାସକାଠି ପାଲା ଗାୟକ ପରମ ପୂଜନୀୟ ଶ୍ରୀଯୁକ୍ତ ବୈଦନାଥ ରଥଶର୍ମାଙ୍କର ମର୍ମନ୍ତୁଦ ଅକାଳ ବିୟୋଗ ଓଡ଼ିଶାର ପାଲା ଗାୟକ ପରିବାରରେ ଅସରନ୍ତି ଶୋକର ଉଚ୍ଛ୍ୱାସ ଖେଳାଇ ଦେଇଛି । ସର୍ବୋପରି ତାଙ୍କର ବିୟୋଗ ଓଡ଼ିଆ ସଂସ୍କୃତିର ଅପୂରଣୀୟ କ୍ଷତି । ଈଶ୍ୱର ତାଙ୍କର ବିୟୋଗ-ବିଧୁର ପରିବାରକୁ ଶାନ୍ତି ପ୍ରଦାନ କରନ୍ତୁ ଓ ତାଙ୍କର ଅମର ଆତ୍ମାର ସଦଗତି କାମନା କରୁଅଛୁ ।

ଓଡ଼ିଶାର ସୁପରିଚିତ ସୁବୃହତ ସାହିତ୍ୟ କର୍ମଶାଳା, ଲୋକସଂସ୍କୃତିର ଅନ୍ୟତମ ଉତ୍ସାହଦାତା, ନିପୁଣ ରାଜନୀତିଜ୍ଞ, ଦକ୍ଷ ପ୍ରଶାସକ, ସୁଦକ୍ଷ କରିତ୍‌କର୍ମା ନବ ଉତ୍କଳର ନିର୍ମାତା, ଇତିହାସର ପୁରୁଷ ଡକ୍ଟର ହରେକୃଷ୍ଣ ମହତାବଙ୍କର ବିୟୋଗରେ ଆମେ ତାଙ୍କର ପରିବାର ପ୍ରତି ଗଭୀର ସମବେଦନା ଜଣାଇବା ସଙ୍ଗେ ସଙ୍ଗେ ତାଙ୍କର ଆତ୍ମାର ସଦଗତି କାମନା କରୁଅଛୁ ।

ପରିଶେଷରେ 'କଳା କାକଳୀ'କୁ ପରିପୁଷ୍ଟ କରିଥିବା ବିଜ୍ଞ ଲେଖକ, କବି, କଳାକାର ସାହିତ୍ୟିକ ବନ୍ଧୁଙ୍କୁ ସାମୟିକ ସାହାଯ୍ୟ ପାଇଁ ବଧାଇ ଜଣାଉ-ଅଛୁ । ନିଖିଳ ଉତ୍କଳ ପାଲା ଗାୟକ ସଂଘ, ସୁନ୍ଦରଗଡ ଶାଖା ବାର୍ଷିକ ସମ୍ମି-ଳନୀ ଅବସରରେ କଳା କାକଳୀକୁ ଉତ୍ତାଳଙ୍କାର ପ୍ରସ୍ତୁତ କରିବାରେ ଯେଉଁ ବିଜ୍ଞାପନ ଦାତା, ସାହିତ୍ୟପ୍ରେମୀ ବନ୍ଧୁମାନେ, ସରକାରୀ ବେସରକାରୀ ଅନୁ-ଷ୍ଠାନ, ଏହି ଶାଖାର ପ୍ରତିଷ୍ଠାତା କୁଳମଣି ଦାଶ, ପୂର୍ବତନ ରେଭେନ୍ୟୁ ଅଫିସର ଅନ୍ୟତମ ସମ୍ପାଦକ ଅଧ୍ୟାପକ ଡାଃ କୃପାସିନ୍ଧୁ ନାୟକ, ସଶକ୍ତ ସମ୍ପାଦକ ଶ୍ରୀ କବିବର ପରିଡ଼ା, ଏହି ଅନୁଷ୍ଠାନର ସକ୍ରିୟ କର୍ମକର୍ତ୍ତା' ସାମ୍ପାଦକ ଶ୍ରୀ ଅଦ୍ୱୈତ ପ୍ରସାଦ ବିଶ୍ୱାଳ, ପାରିଜାତ ପ୍ରେସ୍‌ର କର୍ମୀବୃନ୍ଦ ଆଦଙ୍କନିକଟରେ ଆମର କୃତଜ୍ଞତା ଜଣାଉଅଛୁ । କବିବନ୍ଧୁ ଡଃ ଧୋବେଶ ଚନ୍ଦ୍ର ମିଶ୍ର ଏହି ଅନୁଷ୍ଠାନର ଭାଗ୍ୟ ନିୟନ୍ତା, ତେଣୁ ଭଲମନ୍ଦ ତାଙ୍କର । ସେହିପରି ତାଙ୍କର ଅନ୍ୟାନ୍ୟ କର୍ମକର୍ତ୍ତାଙ୍କୁ ମୋର ସଦିଚ୍ଛା ଜଣାଉଅଛି । ଅଳମତି ବିସ୍ତରେଣ—

ସମ୍ପାଦକ

**ଅଧ୍ୟାପକ ରବୀନ୍ଦ୍ର ନାଥ ନାୟକ**

ଓଡ଼ିଆ ଭାଷା ସାହିତ୍ୟ ମୁଖ୍ୟ

ରାଉରକେଲା ସାନ୍ଧ୍ୟ ମହାବିଦ୍ୟାଳୟ

ତା ୧୯ । ୩ । ୮୨ ରିଖ

ରାଉରକେଲା

# ଓଡ଼ିଆ ଜାତି ଓ ଯାତ୍ରା

● ଡକ୍ଟର ଅର୍ଜ୍ଜୁନ ଶତପଥୀ

---

କୌଣସି ଜାତିର ଅନ୍ତର୍ନିହିତ ଚତ୍ ଶକ୍ତିର ମୂଲ୍ୟାୟନ କରିବା ବାସ୍ତ-ବରେ ଏକ କଠିନ କାର୍ଯ୍ୟ । ବାହ୍ୟ ଦୃଷ୍ଟିରୁ ଅନେକ ପରିଚୟ ଥାଇପାରେ ଓ ଥାଏ । ଆଧୁନିକ ସମାଜରେ ବାହ୍ୟ ବେଶ-ପୋଷାକ, ଖାଦ୍ୟପେୟ; ଜୀବନ ଧାରଣର ଶୈଳୀ କ୍ରମେ କ୍ରମେ ଏକାକାର ହୋଇ ପଡୁଛି । ବାହ୍ୟ ଜୀବନର ଏଇ ସାଧାରଣୀକୃତ ପଦ୍ଧତି ଏତେ କ୍ଷିପ୍ର ଓ ଗତିଶୀଳ ଯେ ଆଜିର ନୂଆ ଢଙ୍ଗ କାଲିକି ପୁରୁଣା । ସମୟର ସ୍ରୋତରେ ନିତି ନୂଆ ନୂଆ ସୃଷ୍ଟି ହେଉଥିବା ଓ ତିରୋହିତ ହୋଇ ଯାଉଥିବା ବାହ୍ୟ ବ୍ୟବହାର ପାଣିର ଫୋଟକା ପରି । କୌଣସି ଜାତିର ପରିଚୟ ଏହା ନୁହେଁ । ଜାତିକୁ ଜାଣିବାକୁ ହେଲେ ତାର ଅନ୍ତରମ୍ଭାର ବୈଭବ ଖୋଜିବା ଆବଶ୍ୟକ ।

ଭାରତ ଭଳି ଗୋଟିଏ ବିରାଟ ଦେଶରେ କେତେ ଜାତି ଅଜ୍ଞାତ କାଳରୁ ରହି ଆସିଛନ୍ତି, ତାର ଅନୁସନ୍ଧାନ ଏପର୍ଯ୍ୟନ୍ତ ହୋଇ ପାରିନାହିଁ । ଭାରତ ବହୁ ଜାତି ଓ ବହୁ ସମ୍ପ୍ରଦାୟର ଦେଶ । କୌଣସି ଦେଶ ବହୁ ସଭ୍ୟତା ଓ ବହୁ ଜାତିର ଚନ୍ତାଧାର, ଭବଧାର ଓ କଳ୍ପନା ନେଇ କଦାପି ବଞ୍ଚିରହି ପାରେନାହିଁ । ଜାତୀୟ ପୂର୍ବାଗ୍ରହ ପରସ୍ପର ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟିକରି ଏକ ଅନ୍ୟକୁ ପଦାନତ କରେ । ପରେ ଦଳତ କରି ତାକୁ ଧ୍ୱଂସ କରିଥାଏ । କିନ୍ତୁ ଭାରତର କଥା ପୁରାପୁରି ଅଲଗା । ଏଠାରେ ପାରସ୍ପରିକ ସଂଘାତ ଅପେକ୍ଷାକୃତ କମ୍ । ଭାର-ତୀୟ ଚନ୍ତାଧାରରେ ଏପର୍ଯ୍ୟନ୍ତ ଅନେକ ବାହ୍ୟ ଚନ୍ତାଧାରର ମିଳନ ହୋଇଛି ଏବଂ ବିଭିନ୍ନ ସମୟରେ ହୋଇଥିବା ଚନ୍ତାତ୍ମକ ମିଳନରେ ମିଳନାତ୍ମକ ସଂଘାତ ଉପୁଜିବା ବଦଳରେ ପ୍ରତ୍ୟେକେ ପରସ୍ପରକୁ ଆଲିଙ୍ଗନ କରିଛନ୍ତି । ମାତ୍ର କେଇ ଶତାବ୍ଦୀ ତଳେ ୟୁରୋପରୁ ବିଖଣ୍ଡିତ ଗୋଟେ ଗୋଷ୍ଠୀ ଦରିଆ ପାରିର ଆମେ-

ରିବା ଭୂଇଁରେ ବସବାସ କଲା । ସ୍ୱତନ୍ତ୍ର ଭୂଇଁରେ ସେ ଗୋଷ୍ଠୀଟି ନିଜର ପୃଥକ ଚିନ୍ତାଧାରାର ବିକାଶ କଲା । ମୂଳ ୟୁରୋପ ଭୂଖଣ୍ଡର ଭାବଧାରା ଠାରୁ ଏତେ ଭିନ୍ନ ହୋଇଗଲା ଯେ ପରବର୍ତ୍ତୀ କାଳରେ ନୂଆକରି ଗଢ଼ ଉଠିଥିବା ଆପଣାର ସାଂସ୍କୃତିକ ଇଉରୋପର ଅଙ୍ଗ ବୋଲି କହିବାରେ ଲଜ୍ୟାବୋଧ ହେଲା । ମଧ୍ୟପ୍ରାଚ୍ୟର ସଂସ୍କୃତି କଥା ଦେଖନ୍ତୁ । ବିଶ୍ୱପୃଷ୍ଠରେ ବୋଧହୁଏ ସବୁଠୁ ବେଶୀ ସାଂସ୍କୃତିକ ସଂଘର୍ଷ ହୋଇଛି ସେଇଠାରେ । ଇତିହାସ ଗୋଟେ ସଂସ୍କୃତିର କେନ୍ଦ୍ରରେ ଅନ୍ୟ ଏକ ସଂସ୍କୃତିକୁ କଦାପି ରହିବାକୁ ଅନୁମତି ଦେଇନାହିଁ । ଆମେରିକାର ବର୍ଣ୍ଣବୈଷମ୍ୟ ଜନିତ ସଂଘର୍ଷ ସାଂସ୍କୃତିକ ସଂଘର୍ଷର ବାହ୍ୟ ରୂପ । ଶ୍ରୀଲଙ୍କାର ସଂଘର୍ଷ ମଧ୍ୟ ସେଇପରି । ଶତାବ୍ଦୀ ଶତାବ୍ଦୀ ଧରି ଜନମାନସରେ ଚାପି ରହିଥିବା ସାଂସ୍କୃତିକ ବୈଷମ୍ୟର ଏବେ ଶ୍ରୀଲଙ୍କାରେ ହଠାତ ବିସ୍ଫୋରଣ ହୋଇଛି । କିନ୍ତୁ ଭାରତ ବହୁ ସଂସ୍କୃତି ଓ ବହୁଧାରାର ବିରାଟ ଦେଶ ହେଲେ ମଧ୍ୟ ବିଦ୍ୱେଷ, ସଂଘର୍ଷ ଓ ଦ୍ୱନ୍ଦ୍ୱ ବଦଳରେ ସମନ୍ୱୟର ଦେଶ ରୂପେ ପରିଚିତ । ଏଇ ସମନ୍ୱୟବାଦୀ ଚିନ୍ତାଧାରା ଏଠାରେ ବସବାସ କରୁଥିବା ପ୍ରତ୍ୟେକ ଜାତିର ପ୍ରାଣରେ ସମାନ ଭାବରେ ବିଦ୍ୟମାନ । ଭାରତୀୟ ଜୀବନର ସହିଷ୍ଣୁତା ଅନ୍ୟତ୍ର ବିରଳ ।

ଭାରତକୁ ବହୁ ଜାତିର ଦେଶ ନକହି ଏ ଭୂଖଣ୍ଡରେ ରହୁଥିବା ସମଗ୍ର ସମାଜକୁ ମହାଜାତି ଓ ଏ ସମାଜକୁ ମହାଜାତିର ଦେଶ କହିବା ଠିକ୍ ହେବ । ବିଶ୍ୱକବି ରବୀନ୍ଦ୍ରନାଥ ତେଣୁ 'ମହାମାନବର ସାଗର ତୀରେ' ଉତ୍ଫୁଲ୍ଲ ହୋଇ ଗାଇଥିଲେ । ଭାରତୀୟ ମହାଜାତିର ସଂସ୍କୃତି ବହୁରୂପା ଓ ବହୁଗୁଣା । ସେଥିରୁ ଗୋଟିଏ ରୂପ ଦେଇଛି ଓଡ଼ିଆ । ଓଡ଼ିଆ ଜାତି ମହାଜାତିର ଉପଯୁକ୍ତ ଦାୟାଦ ରୂପେ ଅନେକ ଗୁଣ ଆହରଣ ଓ ସଂରକ୍ଷଣ କରି ପାରିଛି । ମହାଭାରତୀୟ ଜୀବନର ବୈଶିଷ୍ଟ୍ୟ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ସ୍ୱଜାତୀୟ ଜୀବନର ବୈଶିଷ୍ଟ୍ୟକୁ ମଧ୍ୟ ବିକଶିତ କରିଅଛି । ଓଡ଼ିଆ ସଂସ୍କୃତିର ଅର୍ଥ ତେଣୁ ହେବ, ମହାଜାତି ଓ ଜାତିର ସମସ୍ତ ଉନ୍ନତ, ସୃଜନଶୀଳ, ଶାନ୍ତିପୂର୍ଣ୍ଣ ସହାବସ୍ଥାନର ସାରାଂଶ ।

ଆମେ ଏ ଜାତିର ପ୍ରାଚୀନତା ସାଙ୍ଗକୁ ମହାନତା ଓ ପୂର୍ଣ୍ଣତା ଦାବୀ କରୁ । ଏହାର ପ୍ରକୃତ ଇତିହାସ ଅତୀତର ପୃଷ୍ଠାରେ । ଏ ଜାତିର ସଂସ୍କୃତି ନିଶ୍ଚିତ ରୂପେ ଅର୍ବାଚୀନ ନୁହେଁ । ଏ ଜାତିର ଭାବାତ୍ମକ ଉଚ୍ଚତମ ଶିଖରରୁ

ତଳକୁ ତଳକୁ ପ୍ରତ୍ୟେକ ସ୍ତରର ପରୀକ୍ଷା କଲେ ଜଣାଯିବ ଯେ ଅତି ଦୀର୍ଘ ସାଂସ୍କୃତିକ ଜୀବନର ଇୟତ୍ତା ଏହା ଉପରେ ଅବଚେତନର ଅନେକ ସ୍ତର ସୃଷ୍ଟି କରିଛି । ଏ ଜାତିର ପ୍ରକୃତ ପ୍ରମାଣ ଦେବାକୁ କୌଣସି ସାକ୍ଷ୍ୟ ଥାଉ ବା ନଥାଉ, ଇଏ ହେଉଛି ନିଜେ ନିଜର ପ୍ରମାଣ । ହିମାଳୟର ଉତ୍ତୁଙ୍ଗ ଶିଖରରୁ ପ୍ରବାହିତ ପୂଣ୍ୟତୋୟା ଜାହ୍ନବୀଧାରରେ ଯେପରି ଭାରତୀୟ ମହାର୍ଘ ସାଂସ୍କୃତିକ ଜୀବନର ସ୍ପନ୍ଦନ ରହିଛି, ସେହିପରି ଓଡ଼ିଶାର ମହାନଦୀର ଆବର୍ତ୍ତରେ ଓଡ଼ିଆ ପ୍ରାଣର ମର୍ମରିତ ବୁଦ୍‌ବୁଦ୍ ଉଇଁରୀ ଖେଳେ । ନଦୀ ମାତୃକା ସଂସ୍କୃତି ବହୁ ସଂହତିର ସ୍ୱର ଉତ୍ତୋଳନ କରି ଶାନ୍ତିର ଜୟଗାନ କରେ । ବିଷାଦ ଓ କାଳିମାର ରେଖାକୁ ପୋଛିଦେଇ ବ୍ରାହ୍ମଣୀ, ବୈତରଣୀ ଓ ଚନ୍ଦ୍ରୋ-ପ୍ରଭାର ନିର୍ମଳ ଧାରରେ ମୁଖ ପ୍ରକ୍ଷ୍ୟାଳନ କରେ ।

ମଧ୍ୟପ୍ରାଚ୍ୟରୁ ମିଳିଥିବା 'ଲଳିତ ବସ୍ତର'ରେ ତଥାଗତଙ୍କ ଜୀବନୀ ବର୍ଣ୍ଣିତ ହୋଇଅଛି । ତଥାଗତ ଚେହ୍ମ ଭାଷା ଶିକ୍ଷା କରିଥିଲେ, ଓଡ଼ିଆ ଭାଷା ମଧ୍ୟ । ତେବେ ଓଡ଼ିଆ ଭାଷା ଶିଖିଲେ କାହିଁକି ? କଳିଙ୍ଗ-ମଗଧର ସଂସ୍କୃତି ପଡ଼ୋଶୀ ସଂସ୍କୃତି । ମଗଧ ଥିଲା ଏକଦା ବୌଦ୍ଧଧର୍ମର ରଙ୍ଗଭୂମି । ମଗଧର ପଡ଼ୋଶୀ ଭାଷା ଶିଖିବା ଥିଲା ତଥାଗତଙ୍କ ପକ୍ଷେ ଏକ ଅନିବାର୍ଯ୍ୟ ଆବଶ୍ୟକତା ବୋଧହୁଏ । ଭରତ ମୁନି 'ନାଟ୍ୟଶାସ୍ତ୍ର'ରେ ସ୍ପଷ୍ଟ ଭାବେ କହିଛନ୍ତି ଯେ 'ଓଡ଼ିଆ ପ୍ରବୃତ୍ତି' ନାଟ୍ୟଶାସ୍ତ୍ରର ଶୈଳୀ ବିଶେଷ ଅଟେ । ପ୍ରବୃତ୍ତିର ଅର୍ଥ ସ୍ପଷ୍ଟ । ଭାଷା, ଭାବ, ଆଚାର-ବ୍ୟବହାର, ବ୍ୟବହାର ପ୍ରଭୃତିକୁ ଗୋଟିଏ ଶବ୍ଦରେ ପ୍ରବୃତ୍ତି ବୋଲି କୁହାଯାଏ । ଓଡ଼ିଆ ଜାତିର ଦୁଇଟି ପ୍ରମାଣ ମିଳିଥାଏ— ଏହାର ଏକ ଉନ୍ନତ ଭାଷା ଥିଲା ଓ ଏହାର ଏକ ସ୍ୱତନ୍ତ୍ର ତଥା ସମୃଦ୍ଧ ସଂସ୍କୃତି ଥିଲା । ଏଣୁ ଓଡ଼ିଆ ଜାତିର ପ୍ରାଚୀନତା ସମ୍ପର୍କରେ କୌଣସି ସନ୍ଦେହ ନାହିଁ ।

ସମୁଦ୍ରର ବେଳାଭୂମିରେ ଅନନ୍ତ ବିସ୍ତାରୀ ନୀଳ ଜଳରାଶିକୁ ଅନାଇ ଠିଆ ହୋଇଥିବା କୋଣାର୍କ ଓ ନୀଳଶୈଳ ଉପରେ ଉଡୁଥିବା ପବିତ୍ର କେତନ ଯୁଗ ଯୁଗ ବ୍ୟାପୀ ଏ ଜାତିର ସ୍ୱାତନ୍ତ୍ର୍ୟ ଘୋଷଣା କରନ୍ତି । ଏମାନେ ସମନ୍ୱୟ-ବାଦୀ ଓଡ଼ିଆ ଆତ୍ମାର ପ୍ରତୀକ । ଏ ଜାତିର ଜୀବନ ସମ୍ପୂର୍ଣ୍ଣ— ଏହା ତାର ସାକ୍ଷାତ ନିଶାଣ । ଏ ଜାତି ମହାନ, ଏହା ତାର ପ୍ରମାଣ ।

ଭାରତୀୟ ଜୀବନଠାରୁ ଓଡ଼ିଆ ଜାତିର ଜୀବନକୁ ସଂପୂର୍ଣ୍ଣ ଅଲଗା ଦେଖିବା ଅପଚେଷ୍ଟା କେବେ ହୋଇନାହିଁ ବା ହେବ ନାହିଁ । ଓଡ଼ିଆର

ପ୍ରତ୍ୟେକ ରକ୍ତ ବିନ୍ଦୁରେ ଭାରତୀୟ ମହାନ୍ ପରଂପରା, କୃଷି ଓ ଐତିହ୍ୟ ବିଦ୍ୟମାନ । ଗୋଟିଏ ସ୍ୱତନ୍ତ୍ର ଜୀବନ ପ୍ରବାହରେ ସ୍ୱାତନ୍ତ୍ର୍ୟର ରେଖାଂକନ କରିବା ଯେତିକି କଠିନ ସେତିକି ସହଜ ମଧ୍ୟ । ଦୃଷ୍ଟିରୁ ବିଚାର କଲେ, ସମାନତାର ପ୍ରଶ୍ନ ଆରେ ଉଠେ । ଆକୁମାରୀ ହିମାଳୟ ପର୍ଯ୍ୟନ୍ତ ଏପରିକି ଦେଶର ପାଞ୍ଚଲକ୍ଷାଧିକ ଗାଁରେ ସମସ୍ତ ଶ୍ରେଣୀର ଲୋକଙ୍କଠାରେ ଶ୍ରୀ ଶ୍ରୀ ସତ୍ୟନାରାୟଣ ମହାପ୍ରଭୁ ପୂଜା । 'ସତ୍ୟ ନାରାୟଣ କଥା" ତାମିଲନାଡୁର ଗାଁ ଗହଳରେ, ଉତ୍ତରପ୍ରଦେଶର ପୁରପଲ୍ଲୀରେ, ଗୁଜୁରାଟର ଗ୍ରାମାଞ୍ଚଳରେ ଯେପରି ଉତ୍ସାହ ଓ ଭକ୍ତି ସହକାରେ ଅନୁଷ୍ଠିତ ହୁଏ । ଓଡ଼ିଶାରେ ଘରେ-ଘରେ ଠିକ୍ ସେହିପରି ଆରାଧ୍ୟ ଦେବତା ରୂପେ ଲୋକେ ମାନନ୍ତି । ଶ୍ରୀ ସତ୍ୟ ନାରାୟଣ ପୂଜା ଆମ ଜୀବନର ଅଙ୍ଗ । ପ୍ରଭୁ ଉପାସନାରେ ବନ୍ଧୁ ବାନ୍ଧବ ଲୋଡ଼ିବା ଓ ଜଞ୍ଜାଳମୟ ଜୀବନରେ ଏକତ୍ର ପ୍ରଭୁସ୍ମରଣ କରିବାର ପବିତ୍ର ଆୟୋଜନ ହେଉଛି "ପାଲା" । 'ପାଲା' ଅନୁଷ୍ଠାନ ଶ୍ରୀ ସତ୍ୟନାରାୟଣ ପୂଜାର ଅଂଗ ରୂପେ ଏକ ଶୁଦ୍ଧପୂତ ଜୀବନର ପରିପ୍ରକାଶ । ମହାଭାରତୀୟ ପାରଂପରିକ ଜୀବନ ଧାରା ସହିତ ଓଡ଼ିଆ ଜାତିକୁ ମିଶାଇ ଦେବାର ସଫଳ ମାଧ୍ୟମ ଶ୍ରୀ ସତ୍ୟନାରାୟଣ ପୂଜା ଓ ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟର ପ୍ରମାଣ ହେଉଛି "ପାଲା" ଅନୁଷ୍ଠାନ ।

'ପାଲା' ଓଡ଼ିଆ ଜୀବନର କଳ୍ପନା ଜନ୍ୟ ଅବାସ୍ତବ ମନୋରଞ୍ଜକ "ଯାତ୍ରା" ନୁହେଁ । ଏଥିରେ ଅଛି ସ୍ୱାଭାବିକ ଜୀବନର ଉଲ୍ଲାସ ଓ ଚରାଚରିତ ବାସ୍ତବଧର୍ମୀ ଲୋକାନୁଷ୍ଠାନର ସ୍ୱାଦ । ଆୟୋଜନ କିଛି ନାହିଁ । ଆଡମ୍ବର ରହିତ ଏକ ସତସଂଗ ପର୍ବ । ଲୋଡ଼ା କେବଳ କେତୋଟି ପଦାର୍ଥ— ଆରାଧ୍ୟର ଆରାଧନା ସଂଭାର.... ଲୋଟାଏ ପାଣି, ସେରିଣୀ ଭୋଗ, ଦୀପଟିଏ ଧୂପକାଠି-ଟିଏ ଓ ଶ୍ରଦ୍ଧାରୁ କିଛି । ଏଇ କେତୋଟି ସାମାନ୍ୟ ଜିନିଷରେ ହୁଏ ମହତ୍ ଉପାସନା । ଓଡ଼ିଆ ଜାତିର ଏ ମହତ ସାଧନା ବାସ୍ତବରେ କେତେ ମହାନ୍ ! ଖୋଳ, କରତାଳ, ଚଅଁରରେ ପରିବେଶ ଉଲ୍ଲସିତ ହୁଏ । 'ପାଲା' ମଣ୍ଡପକୁ ଶ୍ରୋତା ଓ ଦର୍ଶକ ମାନେ ନିମନ୍ତ୍ରିତ ହୁଅନ୍ତି । ସେମାନେ ଆସନ୍ତି ହୃଦୟର ଅମ୍ଳାନ ଶ୍ରଦ୍ଧା କୁସୁମ ସମର୍ପଣ କରିବା ପାଇଁ । ଏଇ ହେଲା 'ପାଲା'ର ବୈଶିଷ୍ଟ୍ୟ, ଏହାହିଁ ଓଡ଼ିଆ ଜାତିର ଅମର କୃତିତ୍ୱ ।

ପାଲାକାର ଓଡ଼ିଆ କୃଷ୍ଟି ସାଧନା ପାଇଁ ଏକ ଉତ୍ସର୍ଗୀକୃତ ଜୀବନର ପ୍ରତୀକ । ସମାଜର ସବୁ ଶ୍ରେଣୀର ଲୋକଙ୍କୁ ଅନୁରୂପ ଆନନ୍ଦ, ଜ୍ଞାନ, ଭକ୍ତି

ବିତରଣ କରିବା ପାଇଁ ତା'ର କଠୋର ସାଧନାର ପଟାନ୍ତର ନାହିଁ । ଗୃହସ୍ଥ ଜୀବନରୁ ଏକ ପ୍ରକାର ସନ୍ୟାସ ଗ୍ରହଣ କରି, ଲୋକ-କବିତା ସାହିତ୍ୟ, ବ୍ୟାକରଣ, କଥା ଆଖ୍ୟାୟିକ ସଂଗ୍ରହ କରି ତା'ର ପ୍ରକୃତ ବାର୍ତ୍ତା ଜନ ସମାଜ ପାଖରେ ପହଞ୍ଚାଇବା ହେଉଛି ତା'ର ଲକ୍ଷ୍ୟ । ସାଧାରଣ ଜନତା ପାଖରେ ପ୍ରାଚୀନ ଓ ମଧ୍ୟଯୁଗୀୟ ଆଳଙ୍କାରିକ ସାହିତ୍ୟକୁ ରସାଳ ଉପସ୍ଥାପନାର ଗୁରୁ-ଦାୟିତ୍ୱ ବହନ କରେ ପାଲାକାର । ଓଡ଼ିଆ ସାହିତ୍ୟକୁ ଶିକ୍ଷିତ-ଅଶିକ୍ଷିତ ସବୁ ଶ୍ରେଣୀର ଜନତା ଠାରେ ଏଇ ପାଲାକାର ଜନପ୍ରିୟ କରି ପାରିଛି ।

ଶିକ୍ଷା ଓ ଲୋକଶିକ୍ଷା ମଧ୍ୟରେ ପ୍ରଭେଦ ବହୁତ । ଅକ୍ଷର ଶିକ୍ଷା, ଶିକ୍ଷା ଓ ଶିକ୍ଷିତର ମାପକାଠି ନୁହେଁ । ଗୋଟିଏ ସମାଜର ସମସ୍ତ ସଦସ୍ୟ ଅକ୍ଷର ଶିକ୍ଷା ପାଇଁ ଯେଉଁ ଦିନ ଶିକ୍ଷିତ ହୋଇ ଯାଆନ୍ତି, ସେଦିନ ସେ ସମାଜରୁ ଅଜ୍ଞାନତା, ମୂର୍ଖତା, ଅଜ୍ଞତା, ମୂଢ଼ତା ଆଦି କଳଙ୍କ ଲିଭିଯାଏ ନାହିଁ । ଅକ୍ଷର ଜ୍ଞାନ ନ ଥାଇ ମଧ୍ୟ ମଣିଷ ଶିକ୍ଷିତ ହୋଇପାରେ । ଓଡ଼ିଶାରେ ସ୍ୱାକ୍ଷରଙ୍କ ଅପେକ୍ଷା ନିରକ୍ଷରଙ୍କ ସଂଖ୍ୟା ବେଶୀ । କିନ୍ତୁ ଅଶିକ୍ଷିତଙ୍କ ଅପେକ୍ଷା ଶିକ୍ଷିତ ବହୁତ ବେଶୀ । ଲୋକ ଶିକ୍ଷାର ଶ୍ରେଷ୍ଠ ମାଧ୍ୟମ ହେଉଛି 'ପାଲା' । ଓଡ଼ିଶାର ପୁର-ପଲ୍ଲୀରେ ଆମର ଜାତୀୟ ଐକ୍ୟର ମହାନ୍ ଗାଥା ରାମାୟଣ, ମହାଭାରତ ପୁରାଣ, ଉପନିଷଦ୍, ଭାଗବତ, ଗୀତା ବିଷୟରେ ଯେତେ ଲୋକ ଧାରଣା ପାଇଛନ୍ତି, ବୋଧହୁଏ ଦେଶର ଅନ୍ୟ ଅଞ୍ଚଳର ଜନତା ସେତେ ଜାଣନ୍ତିନାହିଁ । ଏହା ହେଉଛି 'ପାଲା'ର ଏକ ଅବଦାନ । ଓଡ଼ିଆ ଜାତିକୁ ଶିକ୍ଷିତ କରିଛି 'ପାଲା' ଏବଂ ଏହା ହେଉଛି 'ଲୋକଶିକ୍ଷା' ର ପ୍ରକୃଷ୍ଟ ମାଧ୍ୟମ । ଏ ଗଣ ମାଧ୍ୟମ ଯୁଗେ ଯୁଗେ କୃତକାର୍ଯ୍ୟ ହୋଇ ପାରିଛି , କହିବା ନିଷ୍ପ୍ରୟୋଜନ ।

ଓଡ଼ିଆ ଜାତିକୁ ଜାତୀୟ ଐକ୍ୟ, ଜାତୀୟ ସଂକଳ୍ପ ଓ ନିଷ୍ଠା ତଥା ଓଡ଼ିଆର ଓଡ଼ିଆ ଜୀବନ ପ୍ରତି ଆସ୍ଥା ଓ ମୋହ ସୃଷ୍ଟି 'ପାଲା' ଦ୍ୱାରା ହିଁ ସମ୍ଭବ । ପ୍ରଚଳିତ ସମସ୍ତ ପ୍ରକାର ଗଣମାଧ୍ୟମ ଭିତରେ 'ପାଲା'ର ସ୍ଥାନ ସର୍ବୋଚ୍ଚ । ଏହା ଜୀବନର ଏକ ଅଭିନ୍ନ କଳା ଓ ବାସ୍ତବଧର୍ମୀ ଚେତନାର ପରିପ୍ରକାଶ । ଏବେ ସମୟ ଆସିଛି, ନିଜସ୍ୱ କଳାର ଅବକ୍ଷୟ କାଳରେ ପାଲାକୁ ଜାତୀୟ ସଂରକ୍ଷଣ ଦେବାକୁ ହେବ । ଲୋକ ଓ ଶିଳ୍ପକଳାର ସମସ୍ତ ଗୌରବ ବହନ କରୁଥିବା କଳା ପାଲାର ଉନ୍ନତି ସାଧନ ପାଇଁ ନ୍ୟାସ (ଟ୍ରଷ୍ଟ) ସୃଷ୍ଟି ହେଉ ଏହାହିଁ କାମନା ।



କ୍ୱାଟର ନଂ.-ଏ/୪୮
ସେକ୍ଟର - ୩, ରାଉରକେଲା- ୨

# କବି ମଞ୍ଜୁଳଙ୍କ କୃତି-ନିକେତନରେ ମନୁଷ୍ୟ ଶିଳ୍ପ

● କବିବର ପଣ୍ଡା

ଅନ୍ୟର ଭାବନାକୁ ନିଜ ଭାବ ବଳୟରେ ଓ ନିଜର ଭାବରାଶିକୁ ଅନ୍ୟ ମନରେ ସଂଚାରିତ କରିବା ହିଁ ମନୁଷ୍ୟ ଶିଳ୍ପ । ମନୁଷ୍ୟ ଶିଳ୍ପରେ ସତ୍ୟ ସହିତ କିଛି କଳ୍ପନାକୁ ପୁଟ ଦେଲେ ଭାବ ବିଗ୍ରହ କଳାବନ୍ତ ଓ ରସବନ୍ତ ହୁଏ । ଏହା- ଦ୍ଵାରା ସ୍ରଷ୍ଟାଙ୍କର କଳା କୁଶଳତା ଜନ ସମାଜରେ ଆଦର ଲାଭ କରେ । ପାଠକ ଓ ଶ୍ରୋତାଙ୍କ ମନରେ ସାହିତ୍ୟ ପ୍ରତି ଆଗ୍ରହ ଓ ଅନୁରାଗ ଜନ୍ମାଏ । ମନୁଷ୍ୟ ଶିଳ୍ପର ରୂପାୟନ ସାର୍ଥକ ହୁଏ ।

ସେଇ ଶିଳ୍ପର ପାରଙ୍ଗମ ଶିଳ୍ପୀ କବିମଞ୍ଜୁଳ କୃଷ୍ଣ ପ୍ରସାଦ ବସୁଙ୍କ ମନୁଷ୍ୟତା ସ୍ଵତନ୍ତ୍ର ଗୁଣରେ ମହିମାନ୍ଵିତ । କବି ବସୁ ପ୍ରାଚୀନ ସାହିତ୍ୟ ପୀଠ ଉପରେ କାବ୍ୟିକ ପରମ୍ପରାରେ ସାମାନ୍ୟ ପରିବର୍ତ୍ତନ ଆଣି ନୂତନକୃତ ନିକେତନ ନିର୍ମାଣ କରିଛନ୍ତି । ସେଥି ମଧ୍ୟରେ ତ୍ରିବିକ୍ରମ ଠାରୁ ଆରମ୍ଭ କରି ବସନ୍ତ ସେନା ପର୍ଯ୍ୟନ୍ତ ଅନେକ କାବ୍ୟ-କୋଠୀ ମଣି ପ୍ରବାଳ ଭାଷାରେ ସୁସଜ୍ଜିତ । ଲିପିଶ୍ରୀର କୋଟିକମ, ରାଗ ରାଗିଣୀର ପ୍ରୟୋଗ ତଥା ବିଷୟବସ୍ତୁର ଅବତାରଣା ମଧ୍ୟରେ ମନୁଷ୍ୟ କଳା ସତତ୍ ଉଦ୍‌ଭାସିତ । ଯେଉଁଥିରେ ଜନ ଜୀବନର ଶୁଭ କାମନା ମର୍ମବେଦନା, ଭକ୍ତିଭାବନା ବହୁଳ ଭାବରେ ଅନୁରଞ୍ଜିତ । ଏହା ସହିତ ଅର୍ଥ- ନୀତି, ରାଜନୀତି, ଧର୍ମ ଧାରଣା ଓ ସାମାଜିକ ମୂଲ୍ୟବୋଧର ବିବେଚନା ବସୁଙ୍କ ସୃଷ୍ଟି ସାମଗ୍ରୀରେ ପ୍ରତିଫଳିତ । ସର୍ବୋପରି କବିଙ୍କର ବୌଦ୍ଧିକ ଚିନ୍ତାଧାରା ସାଙ୍ଗିତିକତା ଜନମାନସରେ ଅପୂର୍ବ ଉଲ୍ଲାସ ସୃଷ୍ଟିକରେ । ସେଇ ଉଲ୍ଲାସରେ

ମନୁଷ୍ୟ ପାଏ ପରମ ତୃପ୍ତି ଓ ମାନସିକ ପ୍ରଶାନ୍ତି । ଯାହା ମନୁଷ୍ୟକୁ ଧୂସର ଧରଣୀରେ ବଞ୍ଚିବା ପାଇଁ ଜାଗ୍ରତ କରାଏ । ପରସ୍ପର ସହିତ ସୌହାର୍ଦ୍ଦ୍ୟ ବନ୍ଧନରେ ଦୃଢ଼ହୋଇ ରହେ । ଏହାହିଁ କବି ମଞ୍ଜୁଳଙ୍କ ମନ୍ମୟ ଶିଳ୍ପର ମୌଳିକ ଗୁଣ ।

ସେଇ ଗୁଣ ବା ତଦ୍ୟାକୁ ବିଭିନ୍ନ ପର୍ଯ୍ୟାୟରେ ଚ[illegible]ର କରଯାଇ ପାରେ । କବିଙ୍କର ରସାତ୍ମକ ପଦାବଳୀ ସମ୍ପର୍କରେ ଆଲୋକପାତ କଲେ ପ୍ରତୀୟମାନ ହୁଏ ଯେ, ସଂସ୍କୃତ ଶବ୍ଦ ସହିତ ଗ୍ରାମୀଣ ଶବ୍ଦ ଗୁମ୍ଫନରେ ବେଶ ସଫଳ ହୋଇଛନ୍ତି । ଏହାଦ୍ୱାରା କବିଙ୍କର ପାଣ୍ଡିତ୍ୟ ଓ କବିତ୍ୱ କଳାର ଉତ୍କର୍ଷତା ପ୍ରତିପାଦିତ ହୁଏ । ମହାକବି କାଳିଦାସ, ଶ୍ରୀହର୍ଷ, ଜୟଦେବ, ବିଲ୍ୱ-ମଙ୍ଗଳ, ରୂପଗୋସ୍ୱାମୀ, ଅଭିମନ୍ୟୁ, ଫକୀର ମୋହନ, ରାଧାନାଥ ଓ ମେହେ-ରଙ୍କ ଶୈଳୀକଳ୍ପ ଓ ଚିତ୍ରକଳ୍ପର ସାମାନ୍ୟ କଳ୍ପନା ବହୁଙ୍କ କାବ୍ୟଚୟରେ ପ୍ରତିବିମ୍ବିତ । ଏହାଦ୍ୱାରା କବିଙ୍କର ବହୁ ଶାସ୍ତ୍ରଦର୍ଶିତାର ପରିଚୟ ମିଳେ । ଯାହାହେଉ, ବହୁଙ୍କର କାନ୍ତକୋମଳ ପଦାବଳୀ ଜନ ମନକୁ ରଞ୍ଜନ କରେ । ତାହା ମନ୍ମୟକଳାର ଏକ ବିଶେଷ ଗୁଣ । ଏଇ କ୍ରମରେ ଗୋଟିଏ ଭାବବ୍ୟଞ୍ଜକ ଓ ଶ୍ରୁତି ମଧୁର ପଦ ଉଦ୍ଧାର କରିବା ଯଥାର୍ଥ ହେବ ।

‘ଯାହାଙ୍କ ଲେଖନୀ ଲେଖା କୈବଲ୍ୟ କୁଙ୍କୁମ ରେଖା  
ଅଙ୍କିତ କରିଛି କେତେ ଚିତ୍ରକଳା,  
ଭରତେ ଭାରତୀ ମଣି ମଞ୍ଜୁଷା ଫେଡ଼ିଲ କ୍ଷଣି  
ଯା ସୌରଭ ଖେଳିପାଏ ଦଶଦିଗୋଳା ।  
ଶିଖୀପୁଚ୍ଛ ମୌଳୀ ଠାକୁର,  
ଅଙ୍ଗନେ ନର୍ତ୍ତନ କରି, କଲେ ମୁଖର ॥’

‘ବାକ୍ୟଂ ରସାତ୍ମକଂ କାବ୍ୟମ୍’ର ତାତ୍ପର୍ଯ୍ୟ ଏଇ ପଦରେ ନିହିତ । ଭାବ-ଦ୍ୟୋତକ ଓ ମାନବିକ ମୂଲ୍ୟବୋଧରେ ଆଧାରିତ ସୁଶ୍ରାବ୍ୟ ପଦ ସଙ୍ଗଠନ ହିଁ ରସାତ୍ମକ ଓ ମାଧୁର୍ଯ୍ୟ ମଣ୍ଡିତ । ଏଇଭଳି ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦରେ ବହୁ ସାହିତ୍ୟ ଶ୍ରୀସମ୍ପନ୍ନ । ଏହାପରେ କବିଙ୍କର ଭାବ ନୈବେଦ୍ୟକୁ ମୂଲ୍ୟାୟନ କରଯାଇ ପାରେ । ‘ପ୍ରଭାସ ଯଜ୍ଞ’ କାବ୍ୟରେ ଶ୍ୟାମ ବିଚ୍ଛେଦରେ ଗୋପ ଗୋପୀ ଗୋପାଳ ଓ ନନ୍ଦ ଯଶୋଦାଙ୍କର ମର୍ମବେଦନାକୁ କବି ନିଖୁଣ ଭାବେ

ପରିସ୍ଫୁଟ କରିଛନ୍ତି । ଯେଉଁଠିରେ ଜନକ ଜନନୀଙ୍କର ମମତାବୋଧ ଓ ଜନ୍ମ-ଭୂମି ପ୍ରତି ସନ୍ତାନର ମୋହ ଭବକଳ୍ପରେ ପରିଣତ ହୋଇ ଯାଇଛି । ମନୁଷ୍ୟ ଶିଳ୍ପର ଔଜ୍ଜଲ୍ୟ କ୍ରମଶଃ ଏଇ ମର୍ମରେ ଉଦ୍‌ଭାସିତ ହୋଇ ଉଠିଛି । ଯାହାକୁ କବି ପଦ୍ୟ ଛନ୍ଦରେ ଲୀଳାୟିତ କରି ଉପସ୍ଥାପିତ କରିଛନ୍ତି—

'କୃଷ୍ଣ ମଥୁରା ପୁର ଗମନ, ଧନୁ ଶିରୀହୀନ ବୃନ୍ଦାବନ ।
ଆଉ ଶୁଭୁନାହିଁ ବେଣୁର ନିସ୍ୱନ ପ୍ରେମ ଯମୁନା ପୁଲୀନ ସେ
ନୂପୁର, ନିକ୍ୱଣ ବିଶ୍ୱମୋହନ,
ଗୋଗୋଷ୍ଠ ନୟନ ଅଶ୍ରୁ ଛଳଛଳ ନାହିଁ ବିରହୀ ନର୍ତ୍ତନ,
ନିକୁଞ୍ଜବନର ଛିନ୍ନ ମାଳତୀଟି ଲୋଟୁଛି ସୌରଭହୀନ ।'

ଶ୍ରୀକୃଷ୍ଣଙ୍କ ବିଚ୍ଛେଦରେ ବୃନ୍ଦାବନର ସୁଷମା ଯେତେ ଯେଉଁଳି ହତଶ୍ରୀ ହୋଇ ପଡ଼ିଛି । ଏପରିକି, ଶ୍ରୀକୃଷ୍ଣଙ୍କ ଅନୁପସ୍ଥିତିରେ ନିକୁଞ୍ଜ କାନନର ସୁରଭିତା ମାଳତୀ ଲତିକା ଧୂଳି ଧୂସରିତା ହୋଇ ଲୋଟୁଛି । ଏଇ ନାଟକୀୟ ଉପସ୍ଥାପନା ପରେ ପରେ କବି ଯଶୋଦାଙ୍କ ହନ୍ତସନ୍ତ ପ୍ରାଣର ଶୋକାନୁଭୂତିକୁ ସାଂକେତିକ ଛନ୍ଦେ ବ୍ୟକ୍ତ କରିଛନ୍ତି ।

ମାତୃହୃଦୟରେ ଶ୍ରାବଣୀ ଝରଣା ଯେଉଁଳି ଉଲ୍ଲୋଳିତ ହୋଇ ଉଠିଛି । କମ୍ର- କରୁଣାର୍ଦ୍ର- ମନୁଷ୍ୟତା ମଂତମୟ ହୋଇଛି କବିଂକ ଲେଖନୀ ଛଟାରେ-

"ନିଶା ଅବସାନ ହେଲା ବେଳେ,
ଦଧି ମନ୍ଥନ ଦଣ୍ଡ ନ ଚଳେ ।
ପିଞ୍ଜରରେ ଶୁକ ଶାରୀ ଝୁଲୁଥିଲେ ହାକୃଷ୍ଣ କୃଷ୍ଣ ରଟିଲେ ସେ
ଚକିତେ, ବାହିଲା ମାତ୍ରକ କାନେ,
ଆଉ କେତେଦିନ ଯିବ ଏ ଜୀବନ ଯଶୋଦା ତୁଣ୍ଡ ବଖାଣେ ।
ଦାରୁଣ ଦଇବ ଦେଲା ପରଭବ ଏ ବୟସେ ଏଇ ମାନେ ।।"

ଆମ ଭଷାସାହିତ୍ୟରେ ଏଇ ବିଷୟକୁ ଅନେକ କବି ରୂପାୟିତ କରିଥିଲେ ହେଁ ବସ୍ତୁ ନୂତନ ଓ ସ୍ୱର ସଂଯୋଜନାରେ ମୌଳିକତା ପ୍ରଦର୍ଶନ କରିଛନ୍ତି । ଏଇଥି ପାଇଁ ଗାୟକ ମାନଂକ କଣ୍ଠରେ ବସ୍ତୁ ସାହିତ୍ୟ ଝଂକୃତ । ଏଇଭଳି ମର୍ମସ୍ପର୍ଶି ତଥ୍ୟକୁ ଅବଶ୍ୟକ ସ୍ଥଳେ ଯୁଟେଇବାରେ କବି ସୁଦକ୍ଷ । ସେଇ ପ୍ରଭାସ ଯଜ୍ଞରେ

ଦେବକୀ ଓ ଯଶୋଦାର କଥୋପ କଥୋନକୁ ଚମତ୍କାର ଭବେ ବ୍ୟକ୍ତ କରି-ଛନ୍ତି । ଆମର ପାରିବାରିକ ଜୀବନରେ ଘଟୁଥିବା 'ଦୈନନ୍ଦିନ ଘଟଣାକୁ କବି ପ୍ରସଂଗ କ୍ରମେ ଖଂଜି ଦେଇଛନ୍ତି । ସେଇ ଜୀବନ ଚର୍ଯ୍ୟାର ତତ୍ତ୍ୱ ବସ୍ତୁଂକ ଲେଖନୀରେ ହୋଇଛି ରସବନ୍ତ ଓ ଜୀବନ୍ତ । ଦୁଇଜଣ ନାରୀ କୌଣସି କାରଣରୁ କଳହ ପରାୟଣା ହୋଇ ପରସ୍ପର ପ୍ରତି ବ୍ୟଙ୍ଗାତ୍ମକ ଭଷା ବ୍ୟବହାର କରନ୍ତି, ତାହା ବେଶ୍ ଉପଭୋଗ୍ୟ ଓ ହାସ୍ୟମୁଖର ହୋଇଥାଏ । ସେଇ ଭଳି ଯଶୋଦାଂକୁ ଆକ୍ଷେପ କରି ଦେବ କୀଂକର ବିଦ୍ରୁପାତ୍ମକ ବାଣୀକୁ କବି ମଂଜୁଳ ସରଳ ତରଳ ଭବରେ ବ୍ୟକ୍ତ କରିଛନ୍ତି । —

"ବେତକୋଳ ଖାଇଖାଇ ଝର ଜଳ ପିଇ ପିଇ
ଧୋଇଗଲା ଅନ୍ତନାଡ ପଡିଲା କଳା,
ଜଟିଳା ମୁଖରା ଘର ନଥିଲେ ଗୋପପୁରର
ଥାଆନ୍ତା କି ନାହିଁ ଦେହେ ମାଉଁଶ ପୋଳା ।
କାଳନ୍ଦୀ ହ୍ରଦକୁ ପଠାଇ,
ଯେଆଣିବା ପଦ୍ମଫୁଲ ବିକିଲୁ ତୁହି ।
ପରପୁଅ ବୋଲି ସିନା ହୀନିମାନୀ କଲୁ ସମନା
ଆହୁରି ଉଡାଇବାନା ସରମ ନାହିଁ ।।"

ଜୀବନରେ ଅନେକ ସମସ୍ୟା ଆସି ପହଞ୍ଚେ । କେତେବେଳେ ସରଳ ତ କେତେବେଳେ ଜଟିଳ ହୋଇଥାଏ । ଜଟିଳତା - ଫାନ୍ଦରୁ ମୁକ୍ତି ପାଇବା ପାଇଁ ମନୁଷ୍ୟ ନାନା ବିଚାର କରି ବସେ । ଅନ୍ୟର ପରାମର୍ଶ ଲୋଡେ । କେତେକ କ୍ଷେତ୍ରରେ ସଫଳ ହୁଏ ପୁଣି କେତେକରେ ଅସଫଳ ହୋଇଯାଏ । ଏଇଭଳି ରହସ୍ୟାବୃତ୍ତ ଘନଘଟା ମଧ୍ୟରେ ଆମର ଜୀବନଚର୍ଯ୍ୟା । ତା'ହାରି ମଧ୍ୟରେ ଆମ ସାହିତ୍ୟ-ସଂସ୍କୃତି ଓ ଧର୍ମ ଧାରଣାର ଅଭ୍ୟୁଦୟ । ଜୀବନରେ ଅଂଗା ଅଂଗୀ ଭବେ ଜଡିତ । ଯାହା ଦବ୍ୟ ଅଦବ୍ୟ ଭବ ଭଷାରେ ଅନୁରଣିତ । ଏଇ ସମସ୍ତ ସମସ୍ୟା ମଧ୍ୟରେ ଅନୁରାଗ ଓ ପୁଷ୍ପରାଗର ରଙ୍ଗିମା ଜୀବନକୁ ରଂଗ ରସରେ ନିମଜ୍ଜିତ କରେ । ସାଧାରଣତଃ କୈଶୋର ଅବସ୍ଥାରେ ସେଇ ଉନ୍ମାଦନା ମନକୁ ଘାରେ । ସେଇ ପ୍ରେମାଶ୍ରିତ ସମୟକୁ କବିବରୁ କେତେକ ସ୍ଥଳେ ସତର୍କତା ସହ ଚିତ୍ରଣ କରିଛନ୍ତି । ସ୍ୱପ୍ନ ସଂଭବ ଓ ସ୍ୱପ୍ନ ବିଳାସର ପ୍ରତି-ଛବି ଫୁଟି ଉଠିଛି "କଚ ଦେବଯାନୀ" କାବ୍ୟରେ । କଚ ପ୍ରତି ଦେବଯ ନୀର

ଦୁର୍ବଳତାକୁ ପୁଲକମୟୀ ଭାଷାରେ କବି ରୂପ ପ୍ରଦାନ କରିଛନ୍ତି । ଯାହା ଏକାନ୍ତ ବାସ୍ତବ ଭାବରେ ଗ୍ରହଣୀୟ । କଚ ଓ ଦେବଯାନୀଙ୍କ ଅନୁରାଗ ସଂଘର୍ଷ କବି-ତୁଣ୍ଡରେ ମନୋଜ୍ଞଭାବେ ଝଂକୃତ ହୁଏ —

"କଚ ଫୁଲ ତୋଳେ ମାଧବୀଲତାରେ
ଦେବଯାନୀ ଥାଏ ତଳେ,
କେବେ କେବେ ଫୁଲ ଖସୁଁ ଖସି ପଡେ
କିଶୋରୀର ବକ୍ଷ ସ୍ଥଳେ ।

ହସି ବୋଲେ ଚତୁରୀ,— ଚନ୍ଦ୍ର କୁମୁଦନୀ ଏହି ପରି ।
ଜ୍ୟୋତ୍ସ୍ନା ଜାଲ ପ୍ରସାରି — ଢାଳି ନ ଦଏ କି ସୁଧା ବାରି ।।"

ଏଇ ପଦରେ ମାଧୁର୍ଯ୍ୟଭାବ ପରିସ୍ଫୁଟ । ମାଧୁର୍ଯ୍ୟ ଭାବରେ ସାଧାରଣତଃ ମନରେ ସରସତା ଆସେ । ପ୍ରବଳ ଇଚ୍ଛା ଶକ୍ତି ବେଗମୟ ହୋଇ ଉଠେ । ସେଇ ବ୍ୟଗ୍ରତାରେ ଚହଟିଉଠେ ରମଣୀୟ ଦୃଶ୍ୟରାଜି ଓ ତାରୁଣ୍ୟର ରୂପଲାବଣ୍ୟ । ସେଇ ରୂପ ମାଧୁରୀ ସାହିତ୍ୟରେ ସୃଷ୍ଟି କରେ ନାନ୍ଦନିକ କଳା ପାଟବ । ସେଇ କାବ୍ୟର ଅନ୍ୟ ପର୍ଯ୍ୟାୟରେ ସ୍ନେହ-ଅନୁରାଗକୁ ଶୁଚବନ୍ତ କରିବାରେ କବି ମନ ତପାସ୍ୱୀ ଭାବରେ ଉପଦେଶ-ବାଣୀ ଶୁଣାଇଛି । ଦେବଯାନୀର ମନୋ-ଭାବକୁ କଚ ବୁଝି ପ ରି ପ୍ରତ୍ୟାଖ୍ୟାନ କରିଛନ୍ତି । କଚ୍ ଦୃଷ୍ଟିରେ ଦେବଯାନୀ ହିଁ ଗୁରୁକନ୍ୟା— ତାଙ୍କର ଭଗ୍ନି । ଭାଇ ଭଉଣୀର ପବିତ୍ର ସଂପର୍କ ମଧ୍ୟରେ କଳଙ୍କ-କାଳିମା ଲେପିବା ପାଇଁ କଚ ପସନ୍ଦ କରି ନାହାନ୍ତି । ଯାହା ଆମ ସଂସ୍କୃତି ଓ ସାମାଜିକ ନିୟମ । ଭାରତୀୟ ଜନଜୀବନର ଆଦର୍ଶ । ସେଇ ଆଦର୍ଶକୁ ଶିରୋଧାର୍ଯ୍ୟ କରି ବୃହସ୍ପତିଙ୍କ ପୁତ୍ର— କଚ ମୁଖରୁ ଝରି ଆସିଛି —

"ଏକି କହ ଅସଙ୍ଗତ ଏକି କହ ଅବିହିତ
ଗୁରୁକନ୍ୟା ସ୍ୱଭାବେ ତୁମେ ମୋ ଭଗିନୀ,
ତାହାଠାରୁ ମହତ୍ତର କଳ୍ପନା କି ଏହି ଛାର--
ତନୁରାଗ ଅଙ୍ଗ ସଙ୍ଗ ହେବ କାମିନୀ ।
କାଞ୍ଚନର ଶୁଦ୍ଧ ପ୍ରତିମା,
ଦେବଯାନୀ ଅନୁପମା ତୁମ୍ଭ ମହିମା ।

ନିଷ୍କଳୁଷ ପାରିଜାତ କ୍ଷୁଦ୍ର ଏ ଜାଳସା ଜାତ
ଆଦର୍ଶେ ଦୂଷିତ ହେବ ଶୁଭ୍ର ସୁମନା ।।"

ଏହିଭଳି ପଦମାନଙ୍କରେ ମନୁଷ୍ୟ ଶିଳ୍ପର ସ୍ୱରୂପ ରୂପାୟିତ । ଯାହା ଗଣ୍ଡଦରତାପରେ ବିବେଚିତ । ସର୍ବୋପରି ଜନମାନସର ପ୍ରତିଫଳନ ମନୁଷ୍ୟତାରେ ରୂଢ଼ିମନ୍ତ । ଏହା ବ୍ୟତୀତ ସମାଜରେ ଚଳମାନ କପଟୀ, ଏକ ଭଣ୍ଡ ତପସୀ ମଦ୍ୟପ ଓ ଖଳନାୟିକାର ରୂପଗୁଣକୁ ସାକ୍ଷ୍ୟ ଲକ୍ଷ୍ୟ ଭିତରେ ଚିତ୍ରିତ କରିଛନ୍ତି । ଚରିତ୍ର ଚିତ୍ରଣରେ କବିଙ୍କର ପଟୁତା ସତ୍ତ୍ୱ ସାଫଲ୍ୟ ଏଠାରେ ସୂଚୀତ କରିବା କଥା ଯେ — କବି ମଞ୍ଜୁଙ୍କ ପ୍ରଥମେ ନାଟକ ଓ ରମ୍ୟରଚନା ଲେଖିଥିଲେ । ସମୟେ ସମୟେ ନିଜେ ବିଭିନ୍ନ ଭୂମିକାରେ ଅଭିନୟ ପ୍ରଦର୍ଶନ କରୁଥିଲେ । ସେହି ଅନୁଭୂତିର ନିର୍ଯ୍ୟାସ ପାଳି ଢାବ୍ୟରେ ଉଲ୍ଲୋକିତ ଓ ମର୍ମରିତ ହୋଇଛି । ବସୁଙ୍କ କାବ୍ୟାବଳୀରେ ମୁଖ୍ୟତଃ ସମାଜର କୁସଂସ୍କାର ଅନ୍ଧବିଶ୍ୱାସ ଧନୀ-ଦରିଦ୍ରର ତାରତମ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳିତ ଓ ଉଚ୍ଚାରିତ । ଯାହା ଗଣ ଚେତନାର ରୂପରେ ଗ୍ରହଣୀୟ । ସେଇ ଚେତନାରେ ମୁକ୍ତ ହୁଏ ମନୁଷ୍ୟତା । ମନୁଷ୍ୟକୁ ସାମ୍ୟ ଓ ସୌମ୍ୟର ସନ୍ଧାନ ଦିଏ । ପାଲାର ମର୍ଯ୍ୟାଦା ଅମ୍ଳାନ ରହେ ବସୁ ସାହିତ୍ୟର ଲୋକପ୍ରିୟତା ବଢ଼ିଥିଲେ ଗାୟକ ମାନଙ୍କ କଣ୍ଠରେ । ବସୁଙ୍କ ଲେଖାଚୟ ଜନମନରେ ସଂଚାର କରେ ଅପୂର୍ବ ପୁଲକ ଓ ଶୀହରଣ । ତାହାରି ମଧ୍ୟରେ ମନୁଷ୍ୟ ସଜାଡ଼େ ନିଏ ଘର ଚରିତ୍ରକୁ ଓ ବୁଦ୍ଧି ବିଚାରକୁ । କବିଙ୍କର ମହନୀୟ କଲମ ମୁନରେ ଅସୁନ୍ଦର କୁତ୍ସିତ ବସ୍ତୁ ମଧ୍ୟ ସୌନ୍ଦର୍ଯ୍ୟବୋଧ ସୃଷ୍ଟି କରେ ପାଲା କାବ୍ୟରେ-- ଏଇ କ୍ରମରେ ଭଣ୍ଡ ତପସ୍ୱୀମାନଙ୍କର ରୂପକାନ୍ତିକୁ ଲକ୍ଷ୍ୟ କରି ବସୁ ଲେଖିଛନ୍ତି —

"କେ ଯାଉଛ ଧନ ଦେଇଯା ଦର୍ଶନ
ବାଇରଣ ଢେଙ୍ଗ- ରୁରୁକି,
ଗୋବରଙ୍କ ଗତି ଝୁଲତ ପେଲନ୍ତ
ମାଧା ହସୁଥିଲା ମୁରୁକି ।
ଢାହୁଁ ଏକି କି- ନାଚତ ଟିକିଏ ନର୍ତ୍ତକୀ ।"

ଏଇଭଳି ସାଣିତ ପଦମାନ 'ପାଦୁକା'ରେ ଲିପିବଦ୍ଧ । ଏଇପଦ ପାଠ କଲେ କଥା ସମ୍ରାଟ ଫକୀର ମୋହନଙ୍କୁ ସ୍ମରଣ କରାଇ ଦିଏ । କବିସୂର୍ଯ୍ୟ

ସଦାନନ୍ଦ ବ୍ରହ୍ମା, ବ୍ରଜନାଥ ବଡ଼ଜେନା ଯଦୁମଣିଙ୍କ ପରେ ହାସ୍ୟ ବ୍ୟଂଗର ସଫଳ ରୂପାୟନ, ଫକୀରମୋହନ, କାନ୍ତ କବି, ଗୋଦାବରୀଶ ମହାପାତ୍ର ଓ ଫତୁରାନନ୍ଦଙ୍କ ସୃଷ୍ଟିରେ ରଣିରଞ୍ଜିତ ।

ତଦରୂପ ବସ୍ତୁଙ୍କ କାବ୍ୟ ଅନେକ ସ୍ଥଳେ ବ୍ୟଂଗ-ରମ୍ୟରଚନା ସ୍ୱତନ୍ତ୍ର ଗୁଣରେ ଜାଜ୍ୱଲ୍ୟମାନ । ତୁଳନାତ୍ମକ ଉବରେ ଫକୀରମୋହନ ଓ ବସ୍ତୁଙ୍କ ଲେଖାକୁ ପର୍ଯ୍ୟାଲୋଚନା କରଯାଇ ପାରେ'- ଛ'ମାଣ ଆଠଗୁଣ୍ଠରେ ଚଂପାର ବେଶଭୂଷା ଓ ବସ୍ତୁଙ୍କର 'ପାଦୁକା' କାବ୍ୟରେ ମଛଘର ବେଶ ପରିପାଟୀକୁ ଦୃଷ୍ଟାନ୍ତ ସ୍ଥଳେ ପ୍ରତିପାଦିତ କରଗଲା—

ଚମ୍ପାର ଦେଶ ବର୍ଣ୍ଣନା—

"କଜ୍ଜଳ ପୂରିତ ଲୋଚନ ଭଲେ
ଗୁଣ୍ଡି ମିଶା ଖିଲୀ ଗୁଞ୍ଜିତ ଗାଲେ ।
ତୈଳ ହରିଦ୍ରା ବୋଳିତ ଦେହେ,
କୁକ୍କୁଟୀ ଏବଂ ଶୀଘ୍ରଂ ଧାବତି ଗେହେ ।।
ଷୋଳହାତି ଶାଢ଼ୀ ବିସ୍ତୃତ କଚ୍ଛେ,
ଥୋପଝଡ଼ା ଚୂଡ଼ା ଶୋଭିତ ପଚ୍ଛେ ।।
ଦୁମ୍ ଦୁମ୍ ଗୁମ୍ ଗୁମ୍ ଚଳତଂତସ୍ୟା,
ତଳତି ବା ଧାବତି ବିଷମ ସମସ୍ୟା ।"

ମଛଘର ବେଶ ବର୍ଣ୍ଣନାକୁ ଅନୁରୂପ ଢଙ୍ଗରେ କବି ମଞ୍ଜୁଳ କେତେକ ରୂପକଳ୍ପ ଓ ଚିତ୍ରକଳ୍ପ ମାଧ୍ୟମରେ ପଦ୍ୟକୁ ରସାଣିତ କରିଛନ୍ତି । ଯାହା ହାସ୍ୟ ରସର ଅବତାରଣାରେ କ୍ଲାଇମେକ୍ସ ସୃଷ୍ଟି କରେ ।

ଉଦାହରଣ ସ୍ୱରୂପ —

କଅଁା ଦରପରେ ଘୁଷୁରୀ ଲାଙ୍ଗୁଳ ପରାୟେ ଘୁଟୁ କୁନ୍ତଳ
ତହିଁ ବାସ ତେଲ ମହଣ ପାଟିଆ ମାର୍ଜନ କି ଝଲ ମଲ
ତୈଳସିକ୍ତ ଲଲାଟ, ମଧ୍ୟେ ମଥାମଣି କି ଉଚ୍ଚାଟ
ଊର୍ଦ୍ଧ୍ୱେ ଚନ୍ଦ୍ର ଋଗିଡ଼ୀ ଦୋହଲାଇ ଘଲେ ଚିଢ଼ ଚିଢ଼ ।

X X X X

ନୋଳକ ମଲସେ ବାଙ୍କିଆ ପିନ୍ଧନ୍ତି ଟୋକାଏ କରନ୍ତି ଥଟ୍ଟା,
ଢେମା ଢେମା ବୋଲି କେହି ନଡାକିଲେ ମନ ହୋଇଯାଏ ଖଟା
ହେଲେ ଧରମ ଭଇ ····  ଉଣେଇଶରୁ ନିଶ୍ଚେ ପଣେ ଥାଇ,
ଉଆସର ନୌକର —  ଦରବୁଢୀର ସର୍ବେ ଦଅର ॥

ମନ୍ଥରର କୁମନ୍ତ୍ରଣା ସର୍ବ ବିଦିତ। ତା'ର ଗୁଣକୁ ଲକ୍ଷ୍ୟ ରଖି କବି ଏଇଭଳି ବେଶରେ ସଜେଇଛନ୍ତି । ଆମ ସମାଜରେ ଏବେ ମଧ୍ୟ ଏଇଭଳି ଘର ଘରଭଙ୍ଗୀ ସ୍ତ୍ରୀ ଲୋକ ଅଛନ୍ତି । ନିମିଷକରେ ସୁନା ସଂସାରକୁ ଚୁନା କରି-ଦଅନ୍ତି । ଜନସମାଜରେ ସେମାନେ ନିନ୍ଦିତ। ଯାହା ଜନତାର ବକ୍ତବ୍ୟ କବି ତାହାକୁ ଉପଲବ୍ଧି କରି ଭଷାରେ ଜୀବନ୍ୟାସ ଦେଇଛନ୍ତି ଏହିଠାରେ ହିଁ ମନୁଷ୍ୟ କବିର ଯଥାର୍ଥ୍ୟ ପ୍ରତିପାଦିତ ହୁଏ ।

ସାମ୍ପ୍ରତିକ ସମାଜରେ କେତେକ ଅଳସୁଆ ଠକ ଧର୍ମବକ ମାନଙ୍କ କଥାରେ ପରିଚାଳିତ ହୋଇ ସେମାନଙ୍କ ପାଦପୂଜାରେ ବ୍ୟସ୍ତ । ସେମାନେ ମନ ସୁଖ ପାଇଁ ନାନା ପ୍ରକାର ଅପକୀର୍ତ୍ତି କରନ୍ତି । କୁକର୍ମ ପାଇଁ ଭଣ୍ଡ ତପସ୍ୱୀମାନେ ଶିଷ୍ୟ ମାନଙ୍କୁ ଉସୁକାଇ ଥାଆନ୍ତି । ଦୀନ ଦରିଦ୍ର ଜନତାର ଝାଳବୁହା ଧନକୁ ଅପ-ହରଣ ପୂର୍ବକ ନିଜର ବିଳାସ ବାସନ ନିମନ୍ତେ କୋଠାବାଡ଼ି ତୋଳନ୍ତି । ଏଇ-ଭଳି କପଟୀ ସନ୍ନ୍ୟାସୀ ମାନଙ୍କର ଚରିତ୍ର କୁହେଳିକାମୟ । ସେମାଙ୍କର ବିଶେଷ ଗୁଣ ହେଲା, ଲୋକଙ୍କ ଆଖିରେ ଧୂଳି ପକାଇ ଧର୍ମ ନାଆଁରେ ଭେଳକି କରିବା । ସେଇ କପଟି ସନ୍ନ୍ୟାସୀ ଓ ଠକ ଶିଷ୍ୟମାନଙ୍କୁ ଲକ୍ଷ୍ୟ କରି କବି ହରିଶ୍ଚନ୍ଦ୍ର କାବ୍ୟରେ ଏକ ସଫଳ ନମୁନା ପ୍ରଦାନ କରିଛନ୍ତି । ଯଥା—

ଏତେକି ମୂରୁଖ ଦେଶ
ପୂଜନ୍ତି ଭେଗା ଅଳସ ।
ଠକି ଖିଆଙ୍କର  ନିତ୍ୟ ପାଦପୂଜା
ଖଟିଖିଆଙ୍କୁ  ପରଶ
ସେ ସନ୍ନ୍ୟାସ—
ହେଲା ବ୍ୟବସ୍ଥର ବାଟ ॥

ଜନସମାଜର ମାନସିକ ପ୍ରତିକ୍ରିୟା ଓ ଭବ ବିନ୍ୟାସକୁ କବି ନିଜ ଭବ ବଳୟରେ ମୂର୍ତ୍ତିବନ୍ତ କଲେ ତାହା ମଧ୍ୟ ମୃଣ୍ମୟ ଶିଳ୍ପ ହୁଏ । ଏଇ ନ୍ୟାୟରେ ଏଇଭଳି ପଦମାନ ମୃଣ୍ମୟ ଶିଳ୍ପର ସୌନ୍ଦର୍ଯ୍ୟକୁ ରୁଚତର କରେ । ଯାହାହେଉ, ପାଲା ଜରିଆରେ ଗଣଶିକ୍ଷ ଓ ଗଣଚେତନା ସୃଷ୍ଟି କରିବାରେ ବସୁଙ୍କ ଲେଖନୀ ତତ୍‌ପର ହୋଇ ଉଠିଛି । ପୌରାଣିକ ଆଖ୍ୟାନ ମଧ୍ୟରେ ଜୀବନର ରହସ୍ୟକୁ ଉଦ୍‌ଘାଟନ କରିବାରେ କବ ସଫଳ ହୋଇଛନ୍ତି । ବସୁଙ୍କ କୃତି ନିକେ-ତନରେ ଜନ ଜୀବନର ପୁଷ୍କଳ ପ୍ରତିଛବି ସହ ଭକ୍ତିଭାବନା ଆଧ୍ୟାତ୍ମିକ ଚନ୍ତ-ଚେତନା ମଧ୍ୟ ଉପଜୀବ୍ୟ । ଜୀବନକୁ ସରସ ସୁନ୍ଦର କରିବା ପାଇଁ ପୁରାଣ ମାନଙ୍କରୁ ନିର୍ବାଚିତ ବିଷୟବସ୍ତୁକୁ କାବ୍ୟ ରୂପ ପ୍ରଦାନ କରିଛନ୍ତି ଅଧିକାଂଶ ସ୍ଥଳେ ସଂସ୍କୃତ ସାହିତ୍ୟର ବାଣୀବିନ୍ୟାସ ଓ ଭାବବିନ୍ୟାସ ବସୁ ସାହିତ୍ୟରେ ମୁଦ୍ରାଙ୍କିତ । ଏହା ସ୍ୱାଭାବିକ କଥା । ପୂର୍ବସୂରୀମାନଙ୍କ କାବ୍ୟାଦର୍ଶରେ ମହା-କବିମାନେ ମଧ୍ୟ ଅନୁପ୍ରାଣିତ । ଏହାଦ୍ୱାରା କବି ମଞ୍ଜୁଳଙ୍କର ସଂସ୍କୃତ ସାହିତ୍ୟ ପ୍ରୀତି ପ୍ରତୀୟମାନ ହୁଏ । ଉଦାହରଣ ସ୍ଥଳେ ଏକ ଶ୍ଲୋକ ଉଦ୍ଧାର କରଗଲା—

'ମଣିନା ବଳୟଂ ବଳୟେନ ମଣିଃ
ମଣିନା ବଳୟେନ ବଭାତି କରଃ ।
କବିନା ଚ ବିଭୁର୍ବିଭୁନା ନ କବିଃ
କବିନା ବିଭୁନା ଚ ବଭାତି ସଭା ।।'

ଏଇ ସୁଭାଷିତ ଶ୍ଲୋକ ପରି ବସୁ ତ୍ରିବିକ୍ରମ କାବ୍ୟରେ ସୌନ୍ଦର୍ଯ୍ୟ ସଂଯୋଜନା ଛାନ୍ଦରେ ଅନେକ ନୂତନ ଉପମାକୁ ସଙ୍ଗଠିତ କରିଛନ୍ତି । ଆମ ଲୋକଗୀତରେ ଯାହା ଅନନ୍ୟ ଓ ଅନବଦ୍ୟ, କବିଙ୍କର ମହନୀୟ କଳମ ମୁନରେ ଫୁଟି ଉଠିଛି ସେଭଳି ରମଣୀୟ ସ୍ତବକଚୟ । ଦୃଷ୍ଟାନ୍ତ ସ୍ୱରୂପ ଏ ସ୍ଥଳେ ଅନୁଲିପିତ କରଗଲା—

'ପ୍ରାନ୍ତର ସୁନ୍ଦର ଗିରିବର ଶୋଭା ବଢାକୁ ସୁନ୍ଦର ବାଳି,
ସରୋବରେ ପଦ୍ମ ବଶଇ ସୁନ୍ଦର ପଦ୍ମକୁ ସୁନ୍ଦର ଅଳି ।
ନଗର ସୁନ୍ଦର ସୌଧ ଅଟ୍ଟାଳିକା ଅଟ୍ଟାଳି ସୁନ୍ଦର ଧ୍ୱଜା,
ସଭକୁ ସୁନ୍ଦର ବିଦ୍ୟାବନ୍ତ ଜନ ରାଜ୍ୟକୁ ସୁନ୍ଦର ରାଜା ।'

କବି ମଞ୍ଜୁଳଙ୍କ କୃତି-ନିକେତନରେ କାବ୍ୟ ପ୍ରତିମାମାନଙ୍କର ରୂପ ଲାବଣ୍ୟ ଓ ମନ୍ତ୍ରମୟ ଉଚ୍ଚାରଣ, ସତତ ମାଧୁର୍ଯ୍ୟ ମଣ୍ଡିତ । ସର୍ବୋପରି ଗଣଚେତନାର

ମୂଲ୍ୟାୟନ, ସତ୍ୟର ସନ୍ଧାନ, ତତ୍ତ୍ୱଦର୍ଶନ ଓ ଭାବ ବିନିମୟର ପ୍ରରେଶ୍ୱାବଣ ଜନଙ୍କ ମନ୍ମୟତାକୁ କରିଛି ଉପୋତୀର୍ଣ୍ଣ । ପାଲା ଗାୟକମାନେ ମଧୁମକ୍ଷିକା ତୁଲ୍ୟ କବି ବହୁଙ୍କର ଅବବୋଧରୁ ମଧୁ ସଂଗ୍ରହ ପୂର୍ବକ ପାଲାର ମଧୁଚକ୍ର ନିର୍ମାଣି ଜନ ସମାଜରେ ସାହିତ୍ୟ-ସଂଗୀତର ମଧୁର ମକରନ୍ଦ ବିତରଣ କରୁ-ଛନ୍ତି । ଯାହା ଫଳରେ କବି ମଞ୍ଜୁଳ କୃଷ୍ଣ ପ୍ରସାଦ ବସୁ ଦେଶର କୋଣ, ଅନୁ-କୋଣରେ ପରିଚିତ କବିଙ୍କ କୃତି-ନିକେତନରେ ମନ୍ତ୍ରମୁଗ୍ଧ ଶିଳ୍ପ ପାଲା ଗାୟକ ମାନଙ୍କ ଯୋଗୁଁ ହିଁ ହୋଇଛି ଅମ୍ଳାନ । ଏଇଥିପାଇଁ ସ୍ରଷ୍ଟା, ସୃଷ୍ଟି ଓ ବିବେକୀ ଗ୍ରାହକ ଗାୟକମାନେ ଆମର ନମସ୍ୟ ।

ରଚନା— ଫେବୃଆରୀ, ୧୯୮୭
ଯୋଗଯୋଗ— ଡି/୪୭, ଆର.ଇ.କଲେଜ କ୍ୟାମ୍ପସ,
ରାଉରକେଲା - ୭୬୯୦୦୮



# ସାହିତ୍ୟ ଓ ସଂସ୍କୃତି

ଶ୍ରୀମତୀ ପ୍ରତିମା ତ୍ରିପାଠୀ

ସାହିତ୍ୟ ସଙ୍ଗୀତ ଓ କଳା ହେଉଛି ମାନବ ସମାଜର ତଥା ଆମ ସଂସ୍କୃତିର ପ୍ରଧାନ ଅଙ୍ଗ ଏବଂ ଏହା ମାଧ୍ୟମରେ ଆମର ଶିକ୍ଷା ସଭ୍ୟତାର ମାନ ଉନ୍ନତତର ହୋଇଥାଏ ।

ଆମ ଓଡ଼ିଶାର ପ୍ରାଚୀନ ସାହିତ୍ୟ ବଡ଼ ସରଳ ଓ ମନ ମୁଗ୍ଧକର ଥିଲା । କାଳକ୍ରମେ ପଡ଼ୋଶୀ ରାଜ୍ୟ ମାନଙ୍କର ପ୍ରଭାବ ଓଡ଼ିଆ ଭାଷା ଓ ସାହିତ୍ୟ ଉପରେ ପଡ଼ିବା ଦ୍ୱାରା ଓଡ଼ିଆ କାବ୍ୟ ସାହିତ୍ୟର ଅଧୋଗତି ପରିଲକ୍ଷିତ ହେଲା । ସେହି ଯୁଗର ପ୍ରାରମ୍ଭରେ ଯୋଗଜନ୍ମା କବିଗଣ ଯଥା— ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ, ଦୀନକୃଷ୍ଣ, ଗୋପାଳକୃଷ୍ଣ, ଭକ୍ତଚରଣ, ଯଦୁମଣି ଏବଂ ପରଯୁଗର ରାଧାନାଥ, ଗଙ୍ଗାଧର, କବିସୂର୍ଯ୍ୟ ପ୍ରଭୃତିଙ୍କର ଆବିର୍ଭାବ ହୋଇଥିଲା । ଉକ୍ତ ମହାନ ପ୍ରତିଭାଗଣ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ଗଢ଼ି ତୋଳିବାରେ ପ୍ରତିଜ୍ଞା ନେଇ ଭାବପୂର୍ଣ୍ଣ ଶବ୍ଦ ବିନ୍ୟାସ ଓ ଯମକ ଅନୁପ୍ରାସ ପ୍ରଭୃତି ଅଳଙ୍କାର ଦ୍ୱାରା ଓଡ଼ିଆ କାବ୍ୟ କବିତାକୁ ଅଳଙ୍କୃତ କରି ରଖିଥିଲେ । ଅଧିକାଂଶ କାବ୍ୟ କବିତାର ଭାଷା ଏତେ କଠିନ ଅର୍ଥପୂର୍ଣ୍ଣ ଯେ ତାହା ସର୍ବସାଧାରଣଙ୍କର ବୋଧଗମ୍ୟ ହେବା ସହଜ ନୁହେଁ ।

ବଡ଼ ସୌଭାଗ୍ୟର କଥା ଯେ ଆମ ଓଡ଼ିଶାର ବାଦୀପାଲା ଗାୟକମାନେ ଉକ୍ତ କାବ୍ୟ ବର୍ଣ୍ଣିତ ଭାବକୁ ସରଳ ସୁନ୍ଦର ଭାବରେ ବ୍ୟାଖ୍ୟାକରି ଶ୍ରୋତାମାନଙ୍କୁ ମୁଗ୍ଧ କରିଥାନ୍ତି । ପାଲା ବା ବାଦୀପାଲା ଜନସାଧାରଣଙ୍କ ମନୋରଞ୍ଜନ ସଙ୍ଗେ ସଙ୍ଗେ ସାହିତ୍ୟ ଓ ସଂସ୍କୃତିର ବିକାଶରେ ସହାୟକ ହୋଇଥାଏ ।

ଆମର ଏହି ପାଲା ଗାୟନ ବହୁ କାଳରୁ ପ୍ରଚଳିତ ହୋଇ ଆସୁଅଛି । ଆମ ସମାଜର ପ୍ରତ୍ୟେକ ପର୍ବପର୍ବାଣୀ ବା ମାଙ୍ଗଳିକ ଉତ୍ସବ ସମୟରେ ଲୋକ-ମାନେ ଏହି ପାଲା ଶୁଣିବାକୁ ବହୁତ ଆଗ୍ରହ ଓ ଉତ୍ସାହ ପ୍ରଦର୍ଶନ କରିଥାନ୍ତି ।

ଆଗ କାଳରେ ଗ୍ରାମାଞ୍ଚଳରେ ମନୋରଞ୍ଜନର ସୁବିଧା ପାଇଁ ସିନେମାର ପ୍ରସାର ନଥିଲା । ଜନସାଧାରଣ ବାଦୀପାଲା ଓ ଥିଏଟରକୁ ବହୁତ ପସନ୍ଦ କରୁଥିଲେ । ଏଣୁ ସେ ସମୟରେ ବାଦୀପାଲାର ବହୁଳ ପ୍ରସାର ଓ ପ୍ରଚାର ହେଉଥିଲା ଏବଂ ଏହା ସର୍ବସାଧାରଣଙ୍କ ଦ୍ୱାରା ବିଶେଷ ଭାବେ ଆଦୃତ ହେଉଥିଲା ।

ପ୍ରତ୍ୟେକ ଗ୍ରାମରେ ଭାଗବତ ଟୁଙ୍ଗୀ ନାମରେ ଏକ ସଂସ୍ଥା ଥିଲା । ପ୍ରତିଦିନ ସନ୍ଧ୍ୟାରେ ଗ୍ରାମର ଲୋକମାନେ ସେଠାରେ ସମ୍ମିଳିତ ଭାବେ ଭାଗବତ ପାଠ ଓ ନାମ ସଂକୀର୍ତ୍ତନ କରୁଥିଲେ । ତାହାଦ୍ୱାରା ଲୋକମାନଙ୍କ ମନରେ ଧର୍ମଭାବର ଜାଗ୍ରତ ହେବା ସଙ୍ଗେ ସଙ୍ଗେ ପରସ୍ପର ପ୍ରତି ସୌହାର୍ଦ୍ଦ ଓ ସହ-ଯୋଗ ବୃଦ୍ଧି ପାଉଥିଲା । ପୂଜାପର୍ବରେ ଲୋକମାନେ ପାଲାଗାୟନ ମାଧ୍ୟମରେ ଆନନ୍ଦ ଉଲ୍ଲାସ ଉପଲବ୍ଧି କରିବାକୁ ଅଧିକ ପସନ୍ଦ କରୁଥିଲେ ।

ସାମାଜିକ, ସାଂସ୍କୃତିକ, ବିଶେଷ ଭାବେ ଧାର୍ମିକ ଅନୁଷ୍ଠାନର ଉଦ୍ୟମ ଯୋଗୁଁ ହିଁ ସାହିତ୍ୟର ବିକାଶ ଘଟିଥାଏ । ପାଲା ଗାୟକମାନେ ପଠିତ କାବ୍ୟ କବିତା ଗୁଡ଼ିକର ସମ୍ୟକ ଆଲୋଚନା ବିଶ୍ଳେଷଣାତ୍ମକ ଭାବେ ପରିବେଷଣ କରିବା ଦ୍ୱାରା ସେଗୁଡ଼ିକ ଧର୍ମପ୍ରାଣ ଓ ଭକ୍ତି ରସାତ୍ମକ ଶ୍ରୋତା ମାନଙ୍କର ଅନ୍ତରତମ ପ୍ରଦେଶକୁ ସ୍ପର୍ଶ କରିପାରେ ଏବଂ ସାମାଜିକ ସ୍ତରରେ ନୈତିକ ଚେତନାର ଜାଗରଣ ମଧ୍ୟ ଆଣିଥାଏ ।

ଯୁଗ ରୁଚିର ଦୋହାଇ ଦେଇ ଅନେକ ଲୋକ ଅବଲୁପ୍ତ ଅତୀତର କାବ୍ୟ-ଶୈଳୀ ପ୍ରତି ଔଦାସିନତା ପ୍ରକାଶ କରିଥାନ୍ତି । ମାତ୍ର ଟିକେ ଗଭୀରତାର ସହିତ ଚିନ୍ତାକଲେ ଜଣାଯାଏ, କଳାର ପ୍ରତ୍ୟେକ ଯୁଗ ବା ସଂସ୍କୃତିର ପ୍ରତ୍ୟେକ ସୋପାନ ମୂଳରେ ଏକ ସ୍ୱତନ୍ତ୍ର ଗତିଶୀଳ ନିୟମ ରହିଥାଏ । ସଂସାର ଚକ ଅନବରତ ଘୂରୁଥାଏ । ପ୍ରତ୍ୟେକ ଜିନିଷ ବୃତ୍ତାକାରରେ ଘୂରି ଘୂରି ପୁଣି ତାର ଉତ୍ପତ୍ତି ସ୍ଥଳରେ ପହଞ୍ଚିଥାଏ । । ପ୍ରାଚୀନ ସାହିତ୍ୟ, ଆମ ସମାଜର ସଂସ୍କୃତି ଆଧ୍ୟାତ୍ମିକତାକୁ ଭୁଲିଗଲେ ତାକୁ ପୁଣିଥରେ ଭଗ୍ନସ୍ତୁପ ଭିତରୁ ଖୋଜିବା ପାଇଁ ଯୁଗ ଯୁଗ ଲାଗିଯିବ ।

ସମାଜର ପ୍ରକୃତ ଚିତ୍ର ନାଟକ, ସାହିତ୍ୟ ଓ କଳାରେ ହିଁ ପ୍ରତିଫଳିତ ହୋଇଥାଏ । ଆଜିକାଲି ସାଂସ୍କୃତିକ ଚିନ୍ତା ଓ ଚେତନା କ୍ଷେତ୍ରରେ ନିଷ୍କ୍ରିୟତା ତଥା ନିମ୍ନମୁଖୀ କଳ୍ପନା ବିଳାସିତାର ପରିପୁଷ୍ଟି ଘଟିବା ସଙ୍ଗେ ସଙ୍ଗେ ଭକ୍ତି ଧର୍ମ ଏବଂ ଆମ ସମାଜର ଯେଉଁ ନୈତିକତାର ମୂଲ୍ୟବୋଧ ଥିଲା ତାହା କ୍ରମଶଃ ହ୍ରାସପାଇ ଯାଉଛି । ଟେପ୍‌ରେକର୍ଡରେ ଶସ୍ତା ସିନେମା ସଙ୍ଗୀତ ପ୍ରଚାର ଓ ପ୍ରସାର ଲାଭ କରୁଛି । ତେଣୁ ସାରଳା ଦାସ, ଜଗନ୍ନାଥ ଓ ବଳରାମଙ୍କର ମନନଶୀଳ ଗଭୀର ଧର୍ମସାଧନା ଏବଂ ଉଦ୍ଧାମ ମାନବିକତାର ବାଣୀ, ଆଶା କରିବା ଯେପରି ବିଡମ୍ବନା, ସେହିପରି ପୁରୁଷୋତ୍ତମ, ଦୀନକୃଷ୍ଣଙ୍କ ପରି ସହଜ ଶୁଦ୍ଧ କବିତ୍ୱ ସହିତ ରସ ଓ ସୌନ୍ଦର୍ଯ୍ୟାନୁଶୀଳନ ଆଶା କରିବା ମଧ୍ୟ ଅସ୍ୱାଭାବିକ ମନେ ହେଉଛି ।

ବିଜ୍ଞାନ ଓ ବୈଜ୍ଞାନିକ ଉଦ୍ଭାବନ ଆମକୁ କ୍ଷଣିକ ଆନନ୍ଦ ଦେଇପାରେ ମାତ୍ର ଆମ ସମାଜର ସଂସ୍କୃତି ଓ ଐତିହ୍ୟକୁ ଫେରାଇ ଆଣି ପାରେ ନାହିଁ । ଏଥିପାଇଁ ବିଜ୍ଞାନ ସହିତ ଧର୍ମର ସମନ୍ୱୟ ଅତ୍ୟନ୍ତ ପ୍ରୟୋଜନ ।

ବିଜ୍ଞାନ ସହିତ ଧର୍ମ ଓ ଆଧ୍ୟାତ୍ମିକତାର ସମନ୍ୱୟ ହେଲେ ସମାଜରେ ମାନବର ବିଚାର ଓ ସିଦ୍ଧାନ୍ତ ସର୍ବୋତଭାବେ ମାନବ ସମାଜର ଉନ୍ନତି କଳ୍ପେ ପରିଚାଳନା କରାଯାଇ ପାରିବ । ଆମ ଜୀବନରୁ ପ୍ରବଞ୍ଚନା, ଦୁର୍ନୀତି, କୁସଂସ୍କାର ଓ ଅନାଦର୍ଶ ଲୋପ କରାଯାଇ ପାରିବ ।

ରାଉରକେଲା ଶିଳ୍ପ ନଗରୀର ଯାନ୍ତ୍ରିକ ଜୀବନଧାରା ଉପରେ କଳାତ୍ମକ ଚେତନାର ଜାଗ୍ରତି ଆବଶ୍ୟକ । ତାହା- କେବଳ ସମ୍ଭବ ହେବ ସାମାଜିକ ମୂଲ୍ୟବୋଧର ଚେତନା ଦ୍ୱାରା । ବିଗତ କାଳର ସଂସ୍କୃତି ଓ ଐତିହ୍ୟକୁ ଉଜ୍ଜୀବିତ କରି ରଖିବା ପାଇଁ ସ୍ଥାନୀୟ ପାଲା ଅନୁଷ୍ଠାନ ପ୍ରତି ଜନସାଧାରଣଙ୍କର ସାହାଯ୍ୟ ଓ ସହଯୋଗ ଏକାନ୍ତ ପ୍ରୟୋଜନ ।

ଡେଲି ମାର୍କେଟ,
ରାଉରକେଲା ।



# ସାମ୍ପ୍ରତିକ ପାଲା : ଏକ ଦୃଷ୍ଟିପାତ

● ରାଜୀବ ପାଣି

ପାଲାମଞ୍ଚ ଉପରେ ପାଲା ପରିବେଷଣ କରୁଥିବା ଅବସ୍ଥାରେ ଜନୈକ ପୁରୁଖା ଗାୟକ ବର୍ତ୍ତମାନର ଯୁବ ଗାୟକ ମାନଙ୍କୁ ଆକ୍ଷେପ କରି କହିଲେ, 'ଆଜିର ଶିକ୍ଷିତ ଟୋକାମାନେ ପାଲା କରିବା ପାଇଁ ଇଚ୍ଛା ଉଡ଼ୁଛନ୍ତି, ସେମାନେ ପାଲାକୁ ବେଶ୍ୟାବୃତ୍ତି ସହିତ ସମାନ କଲେଣି ।' ଅବଶ୍ୟ ଏ ପ୍ରକାର ଆକ୍ଷେପ ମୂଳରେ ତାଙ୍କର ଏକ ଅନ୍ତର୍ନିହିତ ଉଦ୍ଦେଶ୍ୟ ଥିଲା । ସେ ଉଦ୍ଦେଶ୍ୟ ହେଉଛି ଯେ ବାଲେଶ୍ୱର ଜିଲ୍ଲାର ଦରଡ଼ା ଏବଂ ବସ୍ତା ଗ୍ରାମରେ କିଛିବର୍ଷ ଧରି ହୋଇ ଆସୁଥିବା ପାଲାଗାୟକ ପ୍ରତିଯୋଗିତାରେ ଯୁବ ଗାୟକମାନେ ହିଁ ଉଚ୍ଚ ପ୍ରଶଂସିତ ହୋଇ ପୁରସ୍କୃତ ହୋଇ ଆସୁଛନ୍ତି ।

ଏଠାରେ ଦୁଇଟି କଥା ବିଚାର କରାଯାଇ ପାରେ । ଯେଉଁ ପୁରୁଖା ଗାୟକ ଏ ପ୍ରକାର ମନ୍ତବ୍ୟ ଦେଲେ, ସେ ଅନ୍ତତଃ ତିରିଶ ବର୍ଷ ଧରି ପାଲା ଗାୟନ କରି ଆସୁଛନ୍ତି, ତାଙ୍କର ବୟସ ପଞ୍ଚାବନରୁ ଅଧିକ । ସେ ଜଣେ ଭଲ ଗାୟକ ହିସାବରେ ଆଞ୍ଚଳିକ ସ୍ତରରେ ଖ୍ୟାତି ଅଛି । କିନ୍ତୁ ସେ ପ୍ରତିଯୋଗିତା ମାନଙ୍କରେ ଶେଷ ସ୍ଥାନ ଅଧିକାର କରୁଛନ୍ତି କାହିଁକି ? ପ୍ରଥମ କଥା, ଶିକ୍ଷାଗତ ଯୋଗ୍ୟତା ଆବଶ୍ୟକତାନୁଯାୟୀ ନଥିବାରୁ ଭଷାଗତ ଅସ୍ପଷ୍ଟତା ଠାରୁ ଆରମ୍ଭ କରି ଶ୍ଳୋକାବୃତ୍ତିରେ ଅପଭ୍ରଂଶତା ଏବଂ ଭଞ୍ଜଙ୍କ ପଦ ଆବୃତ୍ତି କରି ସାମନ୍ତ-ସିଂହାର କହିବା ଯାଏଁ ତ୍ରୁଟି ପରିଲକ୍ଷିତ ହୁଏ । ତେଣୁ ଗାୟକ ହେବାକୁ ହେଲେ ବିଶେଷତଃ ଆଜିର ସମାଜ ପାଇଁ ଶିକ୍ଷାଗତ ଯୋଗ୍ୟତା ଏକାନ୍ତ ଅପରିହାର୍ଯ୍ୟ । ଅଳ୍ପ ପାଠ ପଢ଼ିଥିବା ଅଧିକାଂଶ ଗାୟକ ଗୁରୁଙ୍କ ଠାରୁ ଯେଉଁ ପଦ, ଶ୍ଳୋକ ଏବଂ ଏ ସମସ୍ତର ଅର୍ଥ ଆୟତ୍ତ କରିଥିବେ, ତାହା ତାଙ୍କ ପାଇଁ

ଯଥେଷ୍ଟ ହୋଇ ରହିଲା । ନିଜସ୍ୱ ମତ ପ୍ରଦାନ କରିବାର ଶକ୍ତି ତାଙ୍କଠାରେ ନଥାଏ । ଅଧିକାଂଶ ପୁରୁଣା ଗାୟକମାନେ ହିଁ ଗୁରୁ ହୋଇଥାନ୍ତି । ତେଣୁ ତାଂକର ଯେଉଁ ତ୍ରୁଟି ରହୁଥିଲା, ଶିଷ୍ୟଙ୍କର ମଧ୍ୟ ସେହି ତ୍ରୁଟି ରହିଲା । କ୍ରମାନ୍ବୟରେ ତାହା ଦୀର୍ଘ ବର୍ଷ ଧରି ତ୍ରୁଟିର ଶୋଧନ କଲାଗଲା ନାହିଁ । ମୂଳ ପାଠ୍ୟ ପୁସ୍ତକ ଗାୟକ ମାନଙ୍କର ଦେଖିବାର ସ୍ୱପ୍ନ ହେଲା । ସଂସ୍କୃତ ଶ୍ଳୋକ ଥିବା ପୁସ୍ତକ ଦେଖିବାର ପ୍ରଶ୍ନ ଉଠୁନାହିଁ । ଏହି ଦୃଷ୍ଟିରୁ ଗାୟକମାନଙ୍କର ଶିକ୍ଷାଗତ ଯୋଗ୍ୟତାର କେତେ ଆବଶ୍ୟକତା ରହିଛି ଅନୁମାନ କରଯାଇପାରେ ।

ଏବେ ସେହି ଗାୟକଙ୍କର ଅକ୍ଷେପୋକ୍ତିମୂଳକ 'ବେଶ୍ୟାବୃତ୍ତି'ର କଥା କହିବା । ପନଥିଲା ଗାୟକମାନେ ବେଶୀ ପରିମାଣ ଆବୃତ୍ତି ନକରି ସମାଜରେ ମୁଣ୍ଡଟେକି ପାରୁଥିଲେ । କିନ୍ତୁ ସାମ୍ପ୍ରତିକ ସମାଜରେ ଗାୟକମାନେ ଯଦ ବେଶୀ ଆବୃତ୍ତି ଅର୍ଥ ତ ପର୍ଯ୍ୟାପ୍ତ ତର୍ଜମା ନ କରିବେ, ତାହେଲେ ଗାୟକ ଭବରେ ମୁଣ୍ଡ ଟେକି ପାରିବେ ନାହିଁ । ତାର କାରଣ ହେଲା— ହିନ୍ଦୁ ଜାତିକୁ ଧର୍ମଭୀରୁ ଜାତି ବୋଲି କୁହାଯାଏ । ଇଶ୍ୱରଙ୍କ କରୁଣା ହିଁ ମଣିଷର ଜନ୍ମ ମୃତ୍ୟୁର କାରଣ । ସ୍କନ୍ଦ ପୁରଣର ବର୍ଣ୍ଣନାନୁଯାୟୀ—

> ଦୁଃଖ ଶୋକାଦ ଶମନଂ
> ଧନ ଧାନ୍ୟ ବିବର୍ଦ୍ଧନଂ
> ସୌଭଗ୍ୟ ସନ୍ତତି କରଂ
> ସର୍ବତ୍ର ବିଜୟ ପ୍ରଦଂ ।

ଏ ସମସ୍ତ ଫଳପ୍ରଦ ହୁଏ ସତ୍ୟନାରାୟଣଙ୍କୁ ପୂଜାକଲେ । ପୁଣି କୁହା-ଯାଏ, 'ଇସ୍‌ସେ ଦରିଦ୍ର ଧନ୍‌ପାତା ହୈ, ବନ୍ଦୀ ବନ୍ଧନ୍‌ସେ ଛୁଟ୍‌ତା ହୈ, ଭୟ-ଭୀତ ଭୟସେ ଛୁଟକାର ପାତା ହୈ ଔର ମନୁଷ୍ୟ ଇସ୍ ଲୋକେମେ ମନୋ-ବାଞ୍ଛିତ ଫଲ ପାକର ଅନ୍ତମେ ସତ୍ୟପୁରମେ ଗମନ କରତା ହୈ ।

ସମସ୍ତ ପ୍ରକାର ଦୁଃଖ, ଶୋକ ମୋଚନ ପାଇଁ ଧନ୍ୟଧାନ୍ୟରେ ପୂର୍ଣ୍ଣତା ଲାଭ କରିବା ପାଇଁ, ସମସ୍ତ ପ୍ରକାର ମନୋବାଞ୍ଛା ପୂର୍ଣ୍ଣ ପାଇଁ ସତ୍ୟନାରାୟଣ ପୂଜାର ବିଧି ବହୁ ପୂର୍ବରୁ ଆମ ସମାଜରେ ପ୍ରଚଳିତ । ସେଥିପାଇଁ କେତେକ ନିର୍ଦ୍ଦିଷ୍ଟ କିମ୍ବଦନ୍ତୀର ଅବତାରଣା କରଯାଇଥାଏ । ସତ୍ୟନାରାୟଣଙ୍କର ବନ୍ଦନା,

ଜଣାଣ, ଭଜନ ଓ ମହିମାକୁ, ମୃଦଙ୍ଗ ଓ ଦୁଇଜଣ ଖଞ୍ଜଣିଆଙ୍କ ସହିତ ବସି ଗାନ କରଯାଇଥାଏ । ପରେ ପରେ ଦଶ ଦିଗପାଳଙ୍କୁ ବନ୍ଦନା କରି ପୋଷାକ ପରିଚ୍ଛଦରେ ଆବୃତ ହୋଇ ଅଭିନୟ ଭଙ୍ଗୀରେ ପାଲା ପରିବେଷିତ ହେଲା । ଏଇଭଳି ଦୀର୍ଘବର୍ଷ ଧରି ପ୍ରଚଳିତ ହେବାପରେ ଉତ୍କଳର ରାଜନୀତିକୁ କେନ୍ଦ୍ର-କରି ପାଲା ଏକ ନୂତନ ମୋଡନେଲା । ପ୍ରାଥମିକ ସ୍ତରରେ ସତ୍ୟନାରାୟଣଙ୍କର ମହିମା ଜନସମାଜରେ ପ୍ରଚାରିତ କରିବା ପାଲାକାର ମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ରହୁଥିଲା । ମାନବ ସମାଜକୁ ଆଧ୍ୟାତ୍ମିକତାର ରଜ୍ଜୁରେ ବନ୍ଧନ କରି ଉଚ୍ଛୃଙ୍ଖଳିତ ସମାଜକୁ ଶୃଙ୍ଖଳିତ କରିବାର ଲକ୍ଷ୍ୟ ରଖୁଥିଲେ ।

ଗାୟକମାନେ ଏକ ପତିବ୍ରତା ନାରୀ ଭାବରେ କେବଳ ଈଶ୍ୱରଙ୍କରେ ଗୁଣ କୀର୍ତ୍ତନ କରି ସମାଜରେ ପ୍ରିୟ ଭାଜନ ହୋଇ ପାରୁଥିଲେ । ଏହିଭଳି ଏକ ସମୟ ଆସି ପହଞ୍ଚିଲା- ଯେତେ ବେଳେ କି ଉତ୍କଳର ଗଙ୍ଗ ରାଜତ୍ୱର ପ୍ରଭାବ ବିସ୍ତାରିତ ହେଲା, ପୂର୍ବରୁ ଚଳିଆସୁଥିବା ଶୈବ ଓ ଶାକ୍ତ ମତବାଦ ହ୍ରାସପାଇ ବୈଷ୍ଣବ ମତବାଦ ମୁଣ୍ଡ ଟେକି ଉଠିଲା, ପରୋକ୍ଷ ଭାବରେ ଗଙ୍ଗ ବଂଶର ରାଜା ମାନେ ଉତ୍କଳର ମାନବ ସମାଜରୁ ଶୈବ ଓ ଶାକ୍ତ ମତବାଦ ଉପରେ ବୈଷ୍ଣବ ମତବାଦର ଆରୋପ କରି ପଞ୍ଚଦେବତା ପୂଜା ବିଧିର ଗୁରୁତ୍ୱ ଆରୋପ କଲେ ।

ପଞ୍ଚତୀର୍ଥର ସମାହାର ଉତ୍କଳ ଶ୍ରୀ ସତ୍ୟନାରାୟଣଙ୍କର ଶଙ୍ଖ, ଚକ୍ର, ଗଦା, ପଦ୍ମ, ଚାରିଗୋଟି ଆୟୁଧ ଭଳି ଶଙ୍ଖ କ୍ଷେତ୍ର ବା ବୈଷ୍ଣବ କ୍ଷେତ୍ର ଶ୍ରୀଜଗନ୍ନାଥଦେବ ପୁରୀ, ଚକ୍ର କ୍ଷେତ୍ର ବା ଶୈବ କ୍ଷେତ୍ର ଲିଙ୍ଗରାଜଦେବ ଭୁବନେଶ୍ୱର, ପଦ୍ମକ୍ଷେତ୍ର ବା ସୌର କ୍ଷେତ୍ର- କୋଣାର୍କ, ଗଦା କ୍ଷେତ୍ର ବା ଶକ୍ତି କ୍ଷେତ୍ର, ଯାଜପୁର ଓ ଗଣପତି କ୍ଷେତ୍ର ଅଂଶୁପାର ଉପାସନା କରି ପଞ୍ଚ ଦେବତାର ପ୍ରତୀକ ରୂପେ ଗାୟକମାନେ ନାରାୟଣଙ୍କର ଅଲୌକିକ ମହିମା ବ୍ୟାଖ୍ୟାନ କଲେ । ପାଞ୍ଚଜଣ ବ୍ୟକ୍ତି ପଞ୍ଚ ଦେବତାଙ୍କର ପ୍ରତୀକ ଭାବରେ ପାଲା ମଞ୍ଚଉପରେ ଛିଡା ହୋଇ ନାରାୟଣଙ୍କର ସୁଦର୍ଶନ ଚକ୍ରକୁ ଚାମର, ଶିବଙ୍କର ଡମ୍ବରୁକୁ ମୃଦଙ୍ଗ ବୀରଜାଙ୍କର ପାଦର ନୁପୁର ସୂର୍ଯ୍ୟଙ୍କର ରଥର ବଲ୍‌ଗାକୁ ରାମତାଳ । ଗଣେଶଙ୍କର ଅଂଶୁଳକୁ ଝାଞ୍ଜଭାବରେ ଗ୍ରହଣ କଲେ । ପଞ୍ଚଦେବତାଙ୍କର ଉପରର ପୂଜାଭଳି ଗାୟକ ବିଭିନ୍ନ ମନ୍ତ୍ର ଆଦରେ ସତ୍ୟ ନାରାୟଣଙ୍କର ପୂଜାର୍ଚ୍ଚନା କରି ପୁରାଣ ବର୍ଣ୍ଣିତ ବିଭିନ୍ନ ଉପାଖ୍ୟାନ ମାନଙ୍କ ଜରିଆରେ ଅଭିନୟ ପ୍ରଦର୍ଶନ କରି କଥୋପ କଥନ ମାଧ୍ୟମରେ ଦର୍ଶକଙ୍କୁ ବିମୁଗ୍ଧ କରିବାରେ ବ୍ରତୀ ହେଲେ । ପୁଣି ଅଷ୍ଟାଦଶ ଶତାବ୍ଦୀ

ର ପ୍ରାରମ୍ଭରେ ଓଡ଼ିଶାରେ ଆଫଗାନ ମାନଙ୍କର ଶାସନ । ବହୁ ଅତ୍ୟାଚାରରେ ଓଡ଼ିଶାବାସୀ ଦୁର୍ବିସହ ହୋଇ ଉଠିଲେ । ପାଲାକାର ମାନେ ଏକ ନୂତନ ପନ୍ଥାର ଶୀକାର ହୋଇ ଜଗନ୍ନାଥଂକ ନିକଟରେ ଇସ୍ଲାମ ଧର୍ମର ଅବତାରଣା କରାଇ ଜଗନ୍ନାଥଙ୍କୁ ସତ୍ୟପୀର ଭାବରେ ପ୍ରମାଣିତ କଲେ । ହିନ୍ଦୁ ଧର୍ମ ଓ ମୁସଲମାନ-ଧର୍ମର ସମ୍ମିଶ୍ରଣ ପାଇଁ ହିନ୍ଦୁ ଓ ମୁସଲମାନ ସଂସ୍କୃତି ମଧ୍ୟରେ ଐକ୍ୟ ଭାବ ପ୍ରଦର୍ଶନ କରି ପଞ୍ଚଦେବତାଙ୍କୁ ସଞ୍ଚପୀର ସତ୍ୟନାରାୟଣଙ୍କୁ ସତ୍ୟନାରାୟଣ ଭାବେ ପ୍ରଚଳିତ କରାଇ ମୁସଲିମ୍ ଶାସକମାନଙ୍କ ଦାଉରୁ ରକ୍ଷା ପାଇଲେ । ସେହିଠାରୁ ପାଲା ଏକ ନୂତନ ମୋଡ଼ ନେଇ ପରିବେଶିତ ହେଲା । ଯାହା-ଫଳରେ ଗାୟକମାନଙ୍କର ପୋଷାକ ପରିଚ୍ଛଦ ଆଦି ବଦଳିଲା ।

ପରବର୍ତ୍ତୀ ସମୟରେ ଗାୟକମାନେ ଆଉ ଏକ ପତିବ୍ରତ ହୋଇ ନପାରି ବହୁ ପତିର ଆଶ୍ରୟ ଗ୍ରହଣ କରିବାକୁ ବାଧ୍ୟ ହେଲେ । କାରଣ ଯେଉଁ ଦେଶରେ ବିଜ୍ଞାନର ଅଗ୍ରଗତି ବହୁ ପରିମାଣରେ ହେଲାଣି, ଯାତ୍ରା, ଥିଏଟର, ଚଳଚ୍ଚିତ୍ର, ଦୂରଦର୍ଶନର ଆକର୍ଷଣ ସମାଜର ଆଖିକୁ ରଙ୍ଗୀନ କରାଇ ଦେଲାଣି ନିର୍ଦ୍ଦିଷ୍ଟ ଧର୍ମ ଶତାଧିକ ଧର୍ମରେ ପରିଣତ ହେଲାଣି, ସେଠାରେ ପାଲାକାର ମାନେ ଆଧୁନିକୀ କରଣ ହେବା ପାଇଁ ବାଧ୍ୟ । ବହୁ କବିଙ୍କର ବିଭିନ୍ନ ବର୍ଣ୍ଣନା, ଛାନ୍ଦ, ଚୌପଦର ଅବତାରଣା, ବିଭିନ୍ନ ନୃତ୍ୟଗୀତାଦିର ପରିବେଷଣ, ଏକାନ୍ତ ଅପରିହାର୍ଯ୍ୟ ।

ସାମ୍ପ୍ରତିକ ସମାଜରେ ସାହିତ୍ୟ ଚର୍ଚ୍ଚା ହିଁ ମୁଖ୍ୟ ବିଷୟ ହେବା ବିଧେୟ । ପାଲା ମାଧ୍ୟମରେ ପ୍ରାଚୀନ ସାହିତ୍ୟର ଯେଉଁ ଆଦର୍ଶଗତ ଲେଖା ରହିଛି, ତା'ର ଉପସ୍ଥାପନା କରିବା ଦିଗରେ କେବଳ ଗାୟକମାନେ ହିଁ ଆମୋଘ ଅସ୍ତ୍ର । ସେହି ମାନଙ୍କ ମାଧ୍ୟମରେ ପୂର୍ବସୂରୀ ମାନଙ୍କର ସ୍ମୃତିଚାରଣ କରିବାର ମାର୍ଗ । ତେଣୁ ଯେଉଁମାନେ ଗାୟକ ଭାବରେ ନିଜକୁ ଜନସମାଜରେ ପରିଚିତ ହେବାକୁ ଚାହୁଁଛନ୍ତି ସେମାନେ ପ୍ରାଚୀନ ସାହିତ୍ୟ ମାନଙ୍କରେ ଥିବା ଉନ୍ନତ ତଥ୍ୟକୁ ପ୍ରକୃତ ଭାବେ ବିଶ୍ଳେଷଣ କରିବା ଆବଶ୍ୟକ । ଗୌଡ଼ୀୟ ବୈଷ୍ଣବର ବାହକ-ମାନେ "ବିଶ୍ୱାସେ ମିଳଇ ହରି, ତର୍କେ ବହୁଦୂର" କହି ଶ୍ରୀ ଜଗନ୍ନାଥଙ୍କ ନିକଟରେ କୃଷ୍ଣତ୍ୱ ଆରୋପ କରି, କୃଷ୍ଣଙ୍କର ମର୍ଯ୍ୟାଦା ହାନୀ ଘଟାଇବାର ଯେଉଁ ଅପଚେଷ୍ଟା କରାଇଛନ୍ତି ଏବଂ ଧର୍ମର ଦୁହାଇ ଦେଇ ଗାଁ ଗହଳର ଅଶିକ୍ଷିତ ସମାଜରେ ଧର୍ମାନ୍ଧତାରେ ବୁଡ଼ାଇଛନ୍ତି, ତା'ର ପ୍ରକୃତ ବିଶ୍ଳେଷଣ

ଗାୟକମାନେ କରି ନୂତନ ଚନ୍ତାର ବୋଝ ଶ୍ରୋତାଙ୍କ ମୁଣ୍ଡରେ ଲଦ ଦେବା ଦରକାର । ଯଥା—

ସାକ୍ଷୀ ଗୋପୀନାଥଙ୍କ ପୂଜକ ବେଲ ପଣ୍ଡାଙ୍କର କନ୍ୟା ଲକ୍ଷ୍ମୀ ଗୋପୀନାଥଙ୍କ ଦ୍ୱାର ଅନ୍ତସତ୍ତ୍ୱା ହେବା ଠାରୁ ଆରମ୍ଭ କରି—

"କଦାଚତ୍ କାଳନ୍ଦୀ ତଟ ବିପିନ ସଙ୍ଗୀତ କରବୋ,
ମୁଦାଭିରି ନାରୀ କମଳ ବଦନ ସ୍ୱାଦଃମଧୁପ"

ପର୍ଯ୍ୟନ୍ତ ଅନେକ ତଥ୍ୟ ପ୍ରାଚୀନ କବିମାନେ ବର୍ଣ୍ଣନା କରିଛନ୍ତି । ଏଣୁ ଏ ସମସ୍ତ ଧର୍ମାନ୍ଧତାକୁ ସମୀକ୍ଷାତ୍ମକ ଭବରେ ବିଗ୍ରହ କରି ଯଦି ଏହାର ଏକ ନୂତନ ରୂପ ପ୍ରଦାନ କରିବା ପାଇଁ ଚେଷ୍ଟିତ ରୁହନ୍ତେ ତାହାହେଲେ ବର୍ତ୍ତମାନ ସମାଜରେ ପାଲାର ଆକର୍ଷଣ ସହିତ ଗାୟକମାନେ ବହୁ ଆଦରଣୀୟ ହୁଅନ୍ତେ ସେହି ମହାଭାରତ ରମାୟଣର ଚର୍ଚ୍ଚା କାଳକାଳରୁ ନିର୍ଦ୍ଦିଷ୍ଟ ରୂପ, ନିର୍ଦ୍ଦିଷ୍ଟ ଢଙ୍ଗରେ ଲୋକମାନେ ରଖି ଆସୁଛନ୍ତି । ଏଣୁ ଏହାର ପରିବର୍ତ୍ତନ ପାଇଁ ଅନ୍ୟ କେତେକ ଆଧୁନିକ ବାଦ୍ୟ ଯନ୍ତ୍ରର ସଂଯୋଗ କରି, ପୋଷାକ ପରିଚ୍ଛଦ ପରିବର୍ତ୍ତନ କରି ପାରିଲେ ଓଡ଼ଶୀ ନୃତ୍ୟ ପରି ପାଲା ମଧ୍ୟ ଓଡ଼ିଶା ସଂସ୍କୃତିର ଏକ ପୁରତନ ଅଧ୍ୟାୟର ପୁନରୁଦ୍ଧାର ହୋଇ ପାରନ୍ତା ।

ଅବଶ୍ୟ କେତେକାଂଶରେ ଏହାର ପରିବର୍ତ୍ତନ ଦେଖାଦେଲଣି । ଗାୟକମାନେ ପୂର୍ବପରି ଛାନ୍ଦ, ଚଉପଦୀ ସହିତ ବିଭିନ୍ନ ନୂତନ ତଥ୍ୟର ଅବତାରଣା କଲେଣି । ପୋଷାକ ପରିଚ୍ଛଦର ପରିବର୍ତ୍ତନ ହେଲଣି । ତେବେ ସମ୍ପୂର୍ଣ୍ଣ ନୂତନ ରୂପନେବା ପାଇଁ କେବଳ ଯେ ଗାୟକମାନଙ୍କର ଚେଷ୍ଟା ବା ଶ୍ରମ ସାଧନା ଦରକାର ତା' ନୁହେଁ, ଅନ୍ୟମାନଙ୍କର ମଧ୍ୟ ଅନେକ କିଛି କରିବାର ଅଛି ।

ଯେଉଁ ଗାୟକମାନେ କେବଳ ପାଲାକୁ ବୃତ୍ତି ରୂପରେ ଗ୍ରହଣ କରି ନେଇଛନ୍ତି ଏବଂ ତା ମଧ୍ୟରେ ପରିବାର ପୋଷିବାର ଗୁରୁଦାୟିତ୍ୱ ବହନ କରିଛନ୍ତି, ସେମାନଙ୍କ ପକ୍ଷେ ନୂତନ ଚନ୍ତା ଓ ସାଧନା କରିବା ପାଇଁ ଅବସର କାହିଁ ? ତାଙ୍କ ନିମନ୍ତେ ସରକାରୀ ସ୍ତରରେ କିଛି ସହଯୋଗ ବଢ଼ୁଥିଲେ କୁଟୁମ୍ବ ପୋଷିବାର ଗୁରୁଦାୟିତ୍ୱ କୌଣସି ପ୍ରକାରେ ହାତଛଡ଼ା ହୋଇ ପାରୁଥିଲେ, ନିଜ ଜ୍ଞାନର ପରିମାର୍ଜିତ ରୂପ ପ୍ରଦାନ ପାଇଁ ସମୟ ଦେଇପାରନ୍ତେ ।

ସେପ୍ରକାର ବ୍ୟବସ୍ଥା ଆମ ରାଜ୍ୟରେ ନାହିଁ । ଯଦିବି କୌଣସି ସୂତ୍ର ଥାଏ, ତାହା କେବଳ ସରକାରୀ ସ୍ତରର ନିକଟବର୍ତ୍ତୀ ହୋଇ ପାରୁଥିବା ଗାୟକ ବା ରାଜଧାନୀ ପାର୍ଶ୍ୱବର୍ତ୍ତୀ ସହର ମାନଙ୍କରେ ଥିବା 'କହିବା ଚତୁରୀରେ ମନ ମୋହିବା' ଢଙ୍ଗରେ ଅପଣେଇ ପାରିବା ଗାୟକ ଦ୍ୱାରା ସମ୍ଭବ ।

ଏଥିପାଇଁ ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳର ଓଡ଼ିଶା ସାଂସ୍କୃତିକ ବିଭାଗ ଜରିଆରେ ଗାୟକମାନଙ୍କର ଏକ କର୍ମଶାଳା ଖୋଲି ଉନ୍ନତ ପାଠାଗାରର ବ୍ୟବସ୍ଥା କରି ସୁଷ୍ଠୁ ରୂପେ ଶିକ୍ଷା ପ୍ରଦାନ କରିପାରିଲେ, ଭାରତବର୍ଷର ବିଭିନ୍ନ ପ୍ରାନ୍ତରରେ ଉତ୍କଳୀୟ ଗାୟକମାନେ ପ୍ରଶଂସିତ ହେବା ସାଙ୍ଗକୁ ଉତ୍କଳୀୟ ସଂସ୍କୃତିର ମର୍ଯ୍ୟାଦା ବୃଦ୍ଧି କରିପାରନ୍ତେ ।

ସରକାରଙ୍କ ନିକଟରେ ଗାୟକମାନଙ୍କର ଯୋଗସୂତ୍ର ରକ୍ଷା କରିବା ପାଇଁ ଯଦିବା କିଛିବର୍ଷ ଧରି 'ଶ୍ରୀ ନୀଳାଚଳ ନିଖିଳୋତ୍କଳ ପାଲା ଗାୟକ ପରିଷଦ' କିଛିଟା କାର୍ଯ୍ୟ କରୁଛନ୍ତି, ତାହା ମଧ୍ୟ ଯଥେଷ୍ଟ ନୁହେଁ । କାରଣ ତାହା ମଧ୍ୟ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଦ୍ୱାରା ପରିଚାଳିତ ହେବାକୁ ବସିଲାଣି । ପ୍ରତ୍ୟେକ ସ୍ତରରେ ରାଜନୀତି ପ୍ରବେଶ କରି ପ୍ରାଚୀନ ମୂଲ୍ୟବୋଧ ଉପରେ କୁଠାରଘାତ କରି ଚାଲିଛି । ପାଲା ଅବସ୍ଥା ମଧ୍ୟ ସେହିପରି । ତେଣୁ ସରକାରଙ୍କର ଦୃଷ୍ଟି ଏ ଦଗରେ ଆକର୍ଷିତ ନହେଲେ କିଛିବର୍ଷ ପରେ ତାହା ବିଲୟ ହୋଇଯିବା ଅସମ୍ଭବ ନୁହେଁ ।



ସ୍ୱସ୍ତି କାର୍ଯ୍ୟାଳୟ,
ଶୀତଳା ମନ୍ଦିର, ସେକ୍ଟର-୩,
ରାଉରକେଲା

# ପୁରୁଷାନୁକ୍ରମିକ ଗାୟକ ଷଡ଼ଙ୍ଗୀ ବଂଶ

● ଶ୍ରୀ ଘନଶ୍ୟାମ ଜେନା

କେନ୍ଦ୍ରାପଡ଼ା ସଦର୍‌ଡ଼ିଭିଜନ ଅନ୍ତର୍ଗତ 'କୋରେ' ଗ୍ରାମର ଷଡ଼ଙ୍ଗୀ ବଂଶ ପରମ୍ପରା କ୍ରମେ କେନ୍ଦ୍ରାପଡ଼ାରେ ପାଲା ସଂସ୍କୃତିର ଅଗ୍ରଣୀ ଅଟନ୍ତି । ଏହାଙ୍କ ପରେ 'ତରଡ଼ପାଳ' ଗ୍ରାମର ନାଥ ବଂଶ ଓ 'ଦେଶପୁର' ଗ୍ରାମର କର ବଂଶ ଉଲ୍ଲେଖ ଯୋଗ୍ୟ ଭୂମିକା ଗ୍ରହଣ କରନ୍ତି ।

ଷଡ଼ଙ୍ଗୀ ବଂଶ — ବଳଭଦ୍ର ଷଡ଼ଙ୍ଗୀ ୧୮୧୦ ମସିହା ବେଳକୁ କେନ୍ଦ୍ରାପଡ଼ା ଅଞ୍ଚଳର 'କୋରେ' ଗ୍ରାମରେ ଜଣେ ବିଖ୍ୟାତ ପାଲାଗାୟକ ଭାବେ ପ୍ରତିଷ୍ଠା ଲାଭ କରି ପାରିଥିଲେ । ସେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟାବଳୀର ବିଷୟବସ୍ତୁ ପାଲାମଞ୍ଚରେ ପରିବେଷଣ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ । ତାଂକ ରଚିତ ପାଲା କାବ୍ୟ ମାନଂକ ମଧ୍ୟରେ "ଲକ୍ଷ୍ମୀ ସ୍ୱୟଂବର" ଓ "ଦ୍ରୌପଦୀ ସ୍ୱୟଂବର" ପ୍ରଧାନ । ସେ ଅନେକ ଗୁଡ଼ିଏ ଚଉପଦୀ ମଧ୍ୟ ରଚନା କରିଥିଲେ । ତାଙ୍କ ରଚିତ 'ଜଗଦମ୍ବା ମାତ କରାଳ କାଳୀ' ଓ 'ମୋହନ ବଂଶୀ ମୂର୍ତ୍ତି' ଚୌପଦୀ ଦ୍ୱୟ ଅଦ୍ୟାବଧି ଗାୟକମାନଙ୍କ କଣ୍ଠରେ ଝଂକୃତ । ବଳଭଦ୍ର ଷଡ଼ଙ୍ଗୀ ଷାଠିଏ ବର୍ଷ ବୟସରେ କଲିକତା କାଳୀଘାଟଠାରେ ପାଲା ଗାଇ ଇହଲୀଳା ସମ୍ବରଣ କଲେ । ବଳଭଦ୍ର ଷଡ଼ଙ୍ଗୀ-ଙ୍କର ତିନିପୁତ୍ରଙ୍କ ମଧ୍ୟରୁ ଭୋଳାନାଥ ଓ କୃପାସିନ୍ଧୁ ଉଭୟ ଗାୟକ ଭାବରେ ନିଜକୁ ପ୍ରତିଷ୍ଠା କରିପାରିଥିଲେ ।

## ଭୋଳାନାଥ ଷଡ଼ଙ୍ଗୀ—

ଏ ମହାଶୟ ଭୋଳୀ ଷଡ଼ଙ୍ଗୀ ନାମରେ ପରିଚିତ । ଏ ମଧ୍ୟ ଅନେକ ଭକ୍ତିମୂଳକ ଚୌପଦୀ ରଚନା କରିଛନ୍ତି । ନୟାଗଡ଼ ରାଜଦରବାରର ଅଠର

ଜଣ ଗାୟକଙ୍କ ସହିତ ପାଲା ପ୍ରତିଯୋଗିତା କରି ଭେକାନାଥ ଷଡ଼ଙ୍ଗୀ ଜୟଯୁକ୍ତ ହୋଇ ତତ୍କାଳୀନ ଗଡପରିବାରର ସୁନାଖଡ଼ୁ, କୁଣ୍ଡଳ, ସ୍ୱର୍ଣ୍ଣପଦକ, ଘୋଡା ଏବଂ ବହୁଅର୍ଥ ପୁରସ୍କାର ଲାଭ କରିଥିଲେ । ତାଙ୍କ ରଚିତ 'କି ରଙ୍ଗରେ ଅଛେ ନୂଆ ନାଗରୀ ହୀରବେ' ଚୌପଦୀଟି ଅତି ପ୍ରସିଦ୍ଧ । ଏ ଅଞ୍ଚଳର ଜନ ସାଧାରଣରେ ପ୍ରଚଳିତ । ଭେକାନାଥ ଷଡଙ୍ଗୀ ୨୮ ବର୍ଷ ବୟସରେ ନିଜ ଜନ୍ମଭୂମି 'କୋରେ' ଗ୍ରାମରେ ୧୯୮୨ ମସିହାରେ ପ୍ରାଣତ୍ୟାଗ କଲେ ।

## କୃପାସିନ୍ଧୁ ଷଡ଼ଙ୍ଗୀ—

ଏ ମହାଶୟଙ୍କର ଡାକନାମ ଥିଲା କୁରୁପୁ ଷଡଙ୍ଗୀ । ଏହାଙ୍କର କାବ୍ୟ କବିତା ରଚନା କରିବାରେ ଅସାଧାରଣ ଶକ୍ତିଥିଲା । ଏହାଙ୍କ ସମୟରେ ଉକ୍ତ-ଳରେ ପ୍ରତିଷ୍ଠା ଲାଭ କରିଥିବା ଗାୟକମାନଙ୍କ ନାମକୁ ନେଇ ଏକ ସୁନ୍ଦର ଆଳଙ୍କାରିକ କବିତା ଏବଂ ଉପେନ୍ଦ୍ର ଭଞ୍ଜଙ୍କ ଶୈଳୀ ଅନୁକରଣରେ ସେ ଅନେକ ଦ୍ୱିଅର୍ଥବୋଧକ ଚୌପଦୀମାନ ରଚନା କରି ଯାଇଛନ୍ତି । ପାଲା ଉପ-ଯୋଗୀ ବିଷୟବସ୍ତୁ ମଧ୍ୟରେ ଏହାଂକ ରଚିତ କପଟପାଶା ଓ ହରିବଂଶ ବର୍ଣ୍ଣିତ କୃଷ୍ଣଲୀଳା ପ୍ରଭୃତି ପ୍ରଧାନ । ଏ ଜଣେ ଦଗ୍‌ବିଜୟୀ ଗାୟକ ଭାବରେ ଖ୍ୟାତି ଲାଭ କରିଥିଲେ । ତତ୍କାଳୀନ ମୟୂରଭଞ୍ଜ ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ଏହାଙ୍କ ପାଲା ଗାୟନରେ ବିମୁଗ୍ଧ ହୋଇ ସୁନାଖଡ଼ୁ, କୁଣ୍ଡଳ, ପାଟଯୋଡ଼ ଓ ବହୁଅର୍ଥ ପୁରସ୍କାର ସ୍ୱରୂପ ଦେଇଥିଲେ । ଏ ମହାଶୟଙ୍କ ରଚନାବଳୀ ଓଡ଼ିଆ ସାହିତ୍ୟ ଭଣ୍ଡାରର ଅମୂଲ୍ୟ ସମ୍ପଦ କହିଲେ ଅତ୍ୟୁକ୍ତି ହେବନାହିଁ । କୃପାସିନ୍ଧୁ ଷଡଙ୍ଗୀ ୪୮ ବର୍ଷ ବୟସରେ ସନ ୧୯୨୦ ମସିହାରେ ନିଜ 'କୋରେ' ଗ୍ରାମରେ ଇହଲୀଳା ସମ୍ବରଣ କଲେ ।

## ପଦ୍ମନାଭ ଷଡ଼ଙ୍ଗୀ—

ଭେକାନାଥ ଷଡଙ୍ଗୀଙ୍କର ପୁତ୍ର 'ପଦ୍ମନାଭ ଷଡଙ୍ଗୀ' ଲୋକ ମୁଖରେ 'ପଦନ ଷଡଙ୍ଗୀ ନାମରେ ପରିଚିତ । ଏ ମଧ୍ୟ ଜଣେ ଖ୍ୟାତନାମା ଗାୟକ ହିସାବରେ ନିଜର ବଂଶ ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖି ପାରିଥିଲେ । ତାଙ୍କ ପାଲା କାବ୍ୟ ମଧ୍ୟରେ ଶିବ ବିବାହ, ହିରଣ୍ୟବଧ ଓ ସୁଦାମା ପ୍ରଭୃତି ପ୍ରଧାନ । ଏହାଙ୍କ ରଚିତ ଅନେକ ଚଉତିଶା, ଚଉପଦୀ, ଜଣାଣ ପ୍ରଭୃତି ଅଛି । ଏ ମହା-ଶୟ ଯାଜପୁର କିଆନାଳୀ ଠାରେ 'ନବିନାଥ'ଙ୍କ ସହ ବାଦୀ ପାଲାରେ

ଜୟଯୁକ୍ତ ହୋଇ ଦେଢ଼ସେର ଓଜନର ରୂପା ବେଣ୍ଟ ଝମର ପୁରସ୍କାର ପାଇ-
ଥିଲେ । ଅଦ୍ୟାବଧି ଷଡଙ୍ଗୀଙ୍କ ଘରେ ଉକ୍ତ 'ଝମର' ବିଦ୍ୟମାନ ରହି ଅତୀତ
ଗାଥାକୁ ସ୍ମରଣ କରାଉଛି । ୧୯୩୫ ମସିହାରେ ଷଡଙ୍ଗୀ ମହାଶୟ ନିଜ
ଗ୍ରାମରେ ଦେହ ତ୍ୟାଗକଲେ । ମୃତ୍ୟୁ ବେଳକୁ ତାଙ୍କୁ ୫୨ ବର୍ଷ ହୋଇଥିଲା ।

ପଦ୍ମନାଭ ଷଡଙ୍ଗୀଙ୍କ ସମୟରେ କେନ୍ଦ୍ରାପଡା ଅଞ୍ଚଳରେ ଯେଉଁ
କେତେଜଣ ଗାୟକ ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲେ ସେମାନେ ହେଲେ—
ଦେଶପୁରର ଆର୍ତ୍ତତ୍ରାଣ କର ଏବଂ ତାଙ୍କ ପୁତ୍ର ରଘୁନାଥ କର, ଗଡୋଳର
ଆନନ୍ଦ ପଣ୍ଡା, ପୁଦାଳର ନିଧିନାଥ, ତରଦପାଳର ନରିନାଥ ପ୍ରଭୃତି ପ୍ରଧାନ ।

## ଭାବଗ୍ରାହୀ ଷଡ଼ଙ୍ଗୀ—

କୃପାସିନ୍ଧୁ ଷଡଙ୍ଗୀଙ୍କର ପୁତ୍ର 'ଭାବଗ୍ରାହୀ ଷଡଙ୍ଗୀ' ଉତ୍କଳର ଜଣେ
ବରିଷ୍ଠ ଗାୟକ ଭାବରେ ନିଜର ଆସନ ପ୍ରତିଷ୍ଠା କରି ପାରିଥିଲେ । ଏ ମହା-
ଶୟଙ୍କର ସଂସ୍କୃତ ଶାସ୍ତ୍ରରେ ପାଣ୍ଡିତ୍ୟ ଥିଲା । ନୈଷଧ କାବ୍ୟ ଓ ରଘୁବଂଶ
ସ୍ଥିତ ଦଲୀପ ଗୋଚାରଣ ଏହାଙ୍କ ଦ୍ୱାରା ସୁନ୍ଦର, ସାବଲୀଳ, ମାର୍ଜିତ, ଆଳ-
ଙ୍କାରିକ ଛନ୍ଦରେ ଅନୁବାଦିତ ହୋଇ ପ୍ରଶଂସିତ ହୋଇଅଛି । ଏଥିପାଇଁ ସେ
୧୯୪୩ ମସିହାରେ ଖଣ୍ଡସାହି ପାଲାମଞ୍ଚର ନରିନାଥ, କୃଷ୍ଣ ପୃଷ୍ଟି, ବୈଷ୍ଣବ
ପ୍ରଧାନ, ନିରଞ୍ଜନ କର ପ୍ରଭୃତି ଗାୟକମାନଙ୍କ ସହିତ ପାଲା ପ୍ରତିଯୋଗିତାରେ
ସର୍ବଶ୍ରେଷ୍ଠ ବିବେଚିତ ହୋଇ 'ପଣ୍ଡିତ' ଉପାଧି ଲାଭ କରିଥିଲେ । ଢେଙ୍କା-
ନାଳରେ ୧୬ ଥର ପାଲା ଗାଇ ତତ୍କାଳୀନ ରାଜାସାହେବ ଭଗୀରଥ ମହେନ୍ଦ୍ର
ବାହାଦୂରଂକ ଠାରୁ ପ୍ରଶଂସାପତ୍ର, ସୁନାଖଡୁ, କୁଣ୍ଡଳ, ମୁଦି ଓ ବହୁ ଅର୍ଥ ବଧାଇ
ସ୍ୱରୂପ ଲାଭ କରିଥିଲେ । ଏହି ମହାଶୟଂକର ମଧ୍ୟ ପାଲା ଉପଯୋଗୀ ବହୁ
ରଚନାବଳୀ ଓ ଚୌପଦୀ ମାନ ରହିଅଛି ।

ଭାବଗ୍ରାହୀ ଷଡଙ୍ଗୀ ମହାଶୟ ପାଲାସଙ୍ଗୀତର କେତେକ ପ୍ରାଚୀନ ସ୍ୱରକୁ
ନୂତନ ଲଳିତ ଛନ୍ଦରେ ରାଗ ରାଗିଣୀସୃଷ୍ଟିକରି ଯାଇଛନ୍ତି । ତାଂକର ସମସାମୟିକ
ଗାୟକ ମଣ୍ଡଳୀ ଏହାଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ । ଏ ଜଣେ ମିଷ୍ଟଭାଷୀ,
ସରଳ ଅମାୟିକ ଧରଣର ବ୍ୟକ୍ତି ଥିଲେ । ୧୯୪୮ ମସିହାରେ ୪୮ ବର୍ଷ
ବୟସରେ ନିଜ ଜନ୍ମସ୍ଥାନ 'କୋରେ' ଗ୍ରାମରେ ଏହାଂକର ତିରୋଧାନ ଘଟିଲା ।

## ଦାମୋଦର ଷଡ଼ଙ୍ଗୀ—

ଭବଗ୍ରାହୀ ଷଡଙ୍ଗୀଂଙ୍କର ଭତୃଷ୍ପୁତ୍ର ଶ୍ରୀ ଦାମୋଦର ଷଡଙ୍ଗୀ । ଏ ମହାଶୟ ଗାୟକ ପଦ୍ମନାଭ ଷଡଙ୍ଗୀଂକର ପୁତ୍ର ଏବେ ବିଦ୍ୟମାନ ଅଛନ୍ତି । ଶାରୀରିକ ତଥା ଆର୍ଥିକ ଦୁଃସ୍ଥିତିରେ ପଡ଼ି ଏ ବର୍ତ୍ତମାନ ପାଲା ଗାୟନରୁ ଅବସର ନେଇଛନ୍ତି । ଏହାଂକ ରଚନାବଳୀ ମଧ୍ୟରେ ନୀଳମାଧବ, ନୌକାବିହାର, ଭକ୍ତ ଧ୍ରୁବ, ଜାନୁଭଗ୍ନ, ଇନ୍ଦ୍ରଦର୍ପଗଞ୍ଜନ ଓ ଜଳନ୍ଧର ପ୍ରଧାନ । ଏ ମଧ୍ୟ ଷଡଙ୍ଗୀ କୁଳର ଜଣେ ଖ୍ୟାତନାମା ଗାୟକ ଥିଲେ । ଦୁଃଖର କଥା, ପରମ୍ପରା-ଗତ ଷଡଙ୍ଗୀ ବଂଶର ଯୁବକ ଦାୟାଦମାନେ ଆଜି କାହିଁକି ପାଲା ପ୍ରତି ଉଦାସୀନ ଭାବ ପୋଷଣ କରୁଛନ୍ତି କେଜାଣି ?

ଭବଗ୍ରାହୀ ଷଡଙ୍ଗୀଙ୍କର ଭତୃଷ୍ପୁତ୍ର ଦାମୋଦର ଷଡଙ୍ଗୀ ଜଣେ ପଣ୍ଡିତ ମନ୍ୟ ଗାୟକ ଥିଲେ । ପୂର୍ବ ପୁରୁଷଙ୍କ ଗୌରବ ବଜାୟ ରଖି ଅନେକ ପ୍ରଶଂସାପତ୍ର ଓ ମାନପତ୍ର ପାଇଛନ୍ତି । ଗାୟକ ସମ୍ରାଟ ବୈଷ୍ଣବ ଚରଣ ପ୍ରଧାନ ଗାୟକରତ୍ନ ହରେକୃଷ୍ଣ ନାଥ ଓ ଗାୟକ ଶିରୋମଣି ନିରଞ୍ଜନ କରଙ୍କ ସହ ବହୁ ମଞ୍ଚରେ ପ୍ରତିଯୋଗୀ ଭାବେ ବିଜୟୀ ହୋଇଥିଲେ । କୁମାର ସମ୍ଭବ, ନୈଷଧ ଓ ଭଟ୍ଟୀ ମହାକାବ୍ୟରେ ଏ ମହାଶୟଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଦାମୋଦର ଷଡଙ୍ଗୀଙ୍କର କବିତ୍ୱ ଶକ୍ତି ସର୍ବ ଗାୟକ ବିଦିତ । ଦୁଃଖର କଥା, ଗତ ତା ୨୫।୧୧।୮୭ ରିଖରେ ଏଇ ଖ୍ୟାତନାମା ଗାୟକ ଦାମୋଦର ଷଡଙ୍ଗୀ-ଙ୍କର ଜୀବନ-ଦୀପ ନିର୍ବାପିତ ହେଲା । ପୁରୁଷାନୁକ୍ରମିକ ଗାୟକବଂଶର ପୂର୍ଣ୍ଣଚ୍ଛେଦରେ ଆମ୍ଭେମାନେ ମର୍ମାହତ । ସେହି ମହାନ ଆତ୍ମା ଉଦ୍ଦେଶ୍ୟରେ ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ ।



ଯୋଗାଯୋଗ— ଗ୍ରାମ- ନିକିରଇ
କେନ୍ଦ୍ରାପଡ଼ା, କଟକ

# ଗାୟକ ସମ୍ରାଟଙ୍କ ସଂକ୍ଷିପ୍ତ ପରିଚୟ

● ଡାଃ କୃପାସିନ୍ଧୁ ନାୟକ

---

ଗାୟକ ସମ୍ରାଟ ବୈଷ୍ଣବ ପ୍ରଧାନ ପାଲା ସାହିତ୍ୟର ପରିବେଷଣ ଓ ପ୍ରସାର କ୍ଷେତ୍ରରେ ଏକ ସୁପ୍ରସିଦ୍ଧ ନାମ । ବୋଧହୁଏ ସୃଜନଶୀଳ କଳାକାରର ସ୍ୱାଧୀନ ଇଚ୍ଛାକୁ ପ୍ରତିରୋଧ କରିବା ପାଇଁ କାହାରି ଶକ୍ତି ନଥାଏ ।' ଏ ଉକ୍ତିର ଯଥାର୍ଥତା ତାଙ୍କ ଜୀବନରେ ସ୍ପଷ୍ଟ ପ୍ରତିପାଦିତ । ପଙ୍କରୁ ପଦ୍ମ ଜାତ ହେଲାପରି ଦରିଦ୍ର ପରିବାରର ଦାରୁଣ କଷାଘାତ ଭିତରେ ଉଚ୍ଚଶିକ୍ଷାର ସମ୍ଭାବନାରୁ ବଞ୍ଚିତ ହୋଇ ସେ ଯେ ଦିନେ ଜଣେ କୀର୍ତ୍ତିମାନ ପାଲା ଗାୟକ ଓ ଗୀତାବଳୀର ସ୍ରଷ୍ଟା ହୋଇ ସମଗ୍ର ରାଜ୍ୟର ଜନମାନସରେ ଝଲସି ଉଠିବେ— ଏ ସ୍ୱପ୍ନ ସେ କେବେ ଦେଖି ନଥିଲେ । ସାରସ୍ୱତ ସାଧନା ପାଇଁ ତାଙ୍କର ଏକନିଷ୍ଠ ଅଧ୍ୟବସାୟ ଓ ଆନ୍ତରିକତା ଯୋଗୁ ସେ ଆଜି ପାଲା ସଂସ୍କୃତିର ଜଣେ ଅନନ୍ୟ ମହାରଥୀ ରୂପେ ସର୍ବଜନ ବିଦିତ ଓ ଆଦୃତ ।

ତାଙ୍କର ଜନ୍ମ ୧୯୧୮ ମସିହା ଅଗଷ୍ଟ ୮ ତାରିଖ ଭାଦ୍ରବ ଶୁକ୍ଳ ଚତୁର୍ଥୀ । କଟକ ଜିଲ୍ଲାର ସାଲେପୁର ଅନ୍ତର୍ଗତ ଅମଣିଆ ପାଟଣା ଗ୍ରାମର ଏକ ଦରିଦ୍ର ପରିବାରରେ ତାଙ୍କର ଆବିର୍ଭାବ ହୁଏ, ପିତା ନରହରି ପ୍ରଧାନଙ୍କ ଔରଷରୁ । ନିଜ ଗ୍ରାମ ସ୍କୁଲରୁ ନିମ୍ନ ପ୍ରାଥମିକ ପାସ୍ କଲାପରେ ସେ ସାଲେପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । ସାଲେପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ମାଟ୍ରିକୁ୍ୟଲେସନ ପଢୁଥିବା ସମୟରେ ପାରିବାରିକ ଆର୍ଥିକ ଦୁରବସ୍ଥା ତାଙ୍କ ଶିକ୍ଷାରେ ପୂର୍ଣ୍ଣଛେଦ ଟାଣି ଦେଇଥିଲା ସତ କିନ୍ତୁ ପାଲା ଶିକ୍ଷାରେ ଗଭୀର ଆଗ୍ରହ ଓ ଆତ୍ମବିଶ୍ୱାସ ଯୋଗୁ ସେ ଘରେଇ ଭାବରେ ସଂସ୍କୃତରେ ଆଚାର୍ଯ୍ୟ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ । ସଂସ୍କୃତ ଶିକ୍ଷା ମାଧ୍ୟମରେ ସେ

ପାଲାସାହିତ୍ୟ-ଅମୃଧୁର ଗଭୀରତା ସ୍ପର୍ଶ କରିବାର ଆସ୍ପୃହା ପ୍ରବଳରୁ ପ୍ରବଳତର ଭାବେ ଜାଗ୍ରତ ହେଲା ।

ପ୍ରଥମେ ସେ ପାଲା ଗାୟକ ଜୀବନ ଆରମ୍ଭ କରନ୍ତି ନିଜର ଆଖପାଖ ଗାଁରେ । ତାଙ୍କର ସୁଲଳିତ କଣ୍ଠରେ ଛନ୍ଦ, ତାଳ ଓ ଲୟର ମଧୁର ସମନ୍ୱୟ, ଗାୟନ ଶୈଳୀର ମାଦକତା, ଅଳଙ୍କାର ସାହିତ୍ୟର ଗଭୀର ଚର୍ଚ୍ଚା ଓ ଭାବ-ବ୍ୟଞ୍ଜକ ଅଭିନୟ ଦର୍ଶକ ଓ ଶ୍ରୋତାମାନଙ୍କ ମନରେ ପ୍ରଭାବ ବିସ୍ତାର କରେ । ତାପରେ ଓଡ଼ିଶାର ବହୁ ଅଞ୍ଚଳ ସହର, ଶିକ୍ଷାନୁଷ୍ଠାନ, ମହାବିଦ୍ୟାଳୟ ଓ ରାଜପ୍ରାସାଦ ମାନଙ୍କରେ ପାଲାସାହିତ୍ୟ ପରିବେଷଣ କରିବାକୁ ବହୁବାର ନିମନ୍ତ୍ରିତ ହୁଅନ୍ତି । ଅସଂଖ୍ୟ ପୁରସ୍କାର ଓ ସାର୍ଟିଫିକେଟ ଦ୍ୱାରା ତାଙ୍କୁ ବହୁ ସ୍ଥାନରେ ଅଭିନନ୍ଦିତ କରାଯାଇଅଛି ।

ସାଲେପୁର ଅନ୍ତର୍ଗତ ଖଣ୍ଡସାହିର ଜମିଦାରିଣୀ ଶ୍ରୀମତୀ ସରସ୍ୱତୀ ଦେବ୍ୟା ଏବଂ ଢେଙ୍କାନାଳ ରାଜା ତାଙ୍କର ପାଲା ପରିବେଷଣରେ ବିମୁଗ୍ଧ ବିମୋହିତ ହୋଇ ତାଙ୍କୁ ଭୂସମ୍ପତ୍ତି ଉପହାର ଦ୍ୱାରା ସମ୍ବର୍ଦ୍ଧିତ କରିଛନ୍ତି ।

ତାଙ୍କର ଲିଖିତ କେତେକ ପାଲା କବିତାର ଅମୂଲ୍ୟ ପାଣ୍ଡୁଲିପି ଅନ୍ୟ ପାଲାକାର ମାନଙ୍କର ଅତି ଆଦରର ଧନ କିନ୍ତୁ ତାହା ଅର୍ଥାଭାବ ଯୋଗୁ ପ୍ରକା-ଶିତ ହୋଇ ପାରିନାହିଁ । ବହୁ ବିଚିତ୍ର ଅନୁଭବ ଓ ଅନୁଭୂତି, ଯାହାସବୁ କବିଙ୍କୁ ଭଗବାନଙ୍କର ପଦାରବିନ୍ଦରେ ମିଳେଇ ଦେବାର ଅନ୍ତରଙ୍ଗତା ସୃଷ୍ଟି କରିଚି ତାର କଳାତ୍ମକ କାବ୍ୟ ରୂପରେ ରୂପାୟିତ ତାଙ୍କର ଅନେକ ପାଣ୍ଡୁଲିପି ।

ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ବହୁ ପାଲା ଗାୟକଙ୍କର ଶିକ୍ଷାଗୁରୁ ଭାବେ ସେ ଯଶସ୍ୱୀ ହୋଇଛନ୍ତି ।



ଏ/୪୯, ସେକ୍ଟର - ୫
ରାଉରକେଲା - ୭୬୯ ୦୦୨

# ଦୁଇଟି ଜଣାଣ

### ଗାୟକ ସମ୍ରାଟ ବୈଷ୍ଣବ ଚରଣ ପ୍ରଧାନ

---

(ଶ୍ରୀ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କଲାବେଳେ ମନରେ ଯେଉଁ ଭକ୍ତିଭାବ ସୃଷ୍ଟି ହୋଇଥିଲା, ସେହିଭାବକୁ ଗୀତରେ ରୂପାୟିତ କରିଛି) ଲେଖକ ।

ଶ୍ରୀ ଜଗନ୍ନାଥ' ଘେନ ମୋର ବିନତି,
ଯୋଗ ଜ୍ଞାନ ଧ୍ୟାନ କିଛି ମୁଁ ଜାଣିନି
ପାଦ ପଦ୍ମ ତଳେ କରେ ପ୍ରଣତି । ଘୋଷା ।।

ନିଶବଦ ଘର ନିଶବଦ ପୁର ଦ୍ୱାର କରିଛନ୍ତି ଶ୍ରୀଭଗବତୀ,
ଶ୍ରୀନୀଳ କନ୍ଦରେ ଗହଳ ଚହଳ କେହି ନଶୁଣନ୍ତି କାହା ଭାରତୀ । ୧ ।।

ଜଗତ ଭିତରେ ଜଗତ ବାହାରେ ଅଦୃଶ୍ୟରେ ଖେଳେ ତୁମ୍ଭ ଶକତି,
ପଥ ନ ପାଇଣ ସାଧୁ ଭକ୍ତ ଦେବା ଋଷି ଦରେ ବୁଲି ସ୍ତବ କରନ୍ତି । ୨ ।।

ଗୁପ୍ତହୋଇ ଗଙ୍ଗା ଚନ୍ଦ୍ରଭାଗା ନାମେ ପ୍ରବାହିତା ହେଲେ ପ୍ରଖର ଅତି,
ତା' ତଟେ ପ୍ରଧାନ କରୁଛି ଜଣାଣ ଶୁଣିବ କି ନାହିଁ ମୋର ଦୁର୍ଗତି । ୩ ।।



(ଶ୍ରୀ ଶ୍ରୀ ରାମଚନ୍ଦ୍ର ଅଯୋଧ୍ୟା ସିଂହାସନରେ ଅଭିଷିକ୍ତ ହେଲା ବେଳେ ଭକ୍ତ ମାନେ ଯେଉଁ ଜଣାଣ କରିଥିଲେ)

ଜୟ ଜୟହେ ରାମ, ପରମ ପୁରୁଷ, ପରମ ପୁରୁଷ,
ତୁମ୍ଭରି କୃପାରେ ପ୍ରଭୁ, ପବିତ୍ର ଏବିଶ୍ୱ, ପରମ ପୁରୁଷ । ଘୋଷା ।।
ନଦ ନଦୀ ବୃକ୍ଷଲତା ତବନାମେ ହରଷିତା,
ତୁମ୍ଭରି ପଦ ପଙ୍କଜ, ମୁକତିର ଶେଷ, ପରମପୁରୁଷ । ୧ ।।

ହଟିଲା ଦୁଃଖ ସକଳ, ରଚିଲେଣି ପକ୍ଷୀକୁଳ,
ଆକୁଳ ବିନାଶ କର୍ତ୍ତା ହେଲେଣି ପ୍ରବେଶ, ପରମପୁରୁଷ । ୨ ।।

ଚନ୍ଦ୍ରଭାଗା ପୁଣ୍ୟନଦୀ ତୀରେ କୁଟୀର ସମ୍ପାଦ
ପ୍ରଧାନ କରେ ଜଣାଣ, ରଜନୀ ଦିବସ, ପରମପୁରୁଷ । ୩ ।। ●

# ଗାୟକ ବିଶାରଦଙ୍କ ସଂକ୍ଷିପ୍ତ ପରିଚୟ

ଡକ୍ଟର ଶ୍ରୀବତ୍ସ ନନ୍ଦ

ବର୍ତ୍ତମାନ ପାଲାମଞ୍ଚରେ ଅଗ୍ରଗଣ୍ୟ ଗାୟକଙ୍କ ଜୀବନୀ ଲେଖିବା ମୋ ପକ୍ଷରେ ଏକ ଗୌରବ ବିଷୟ । କେତେକ ମୁଖ୍ୟ ଘଟଣାକୁ ଉପଜୀବ୍ୟ କରି ଏ ସନ୍ଦର୍ଭର ଅବତାରଣା । ଜଣେ ପାଲାକାରଙ୍କ ଜୀବନ ଓ ଜୀବିକା ଉପରେ ଆଲୋକ ପାତ କଲେ ନିଶ୍ଚିତ ଭାବେ ଏକ ବିରାଟ ଗ୍ରନ୍ଥ ହେବ । ଯାହା ହେଉ, ଯେତେ କମ୍ କଥାରେ ବେଶୀ ତଥ୍ୟକୁ ଉପସ୍ଥାପିତ କରିଯାଇ ପାରେ, ସେତେ ଭଲ । ଏଇଥି ପାଇଁ ମୁଁ ଅନେକ କଥାକୁ ଏଥିରେ ବାଦ୍ ଦେବାକୁ ଉଚିତ ମଣୁଛି ।

'ଏଇ ଅଗ୍ରଣୀ ଗାୟକଙ୍କୁ ସାମାନ୍ୟ ବାର୍ଦ୍ଧକ୍ୟ ସ୍ପର୍ଶ କରିଥିଲେ ହେଁ, ଖୁବ ସୁଲଭ ବାକ୍‌ଭଙ୍ଗୀ ଓ ନୃତ୍ୟ ସଂଗୀତ ବିନ୍ୟାସରେ ବିଭୋର ହୋଇପଡନ୍ତି । ଆମ୍ଭମାନଙ୍କର ପରିଚିତ ଗାୟକ ବିଶାରଦ ଜଗନ୍ନାଥ ବେହେରା । କଟକ ଜିଲ୍ଲା ଏରସମା ଥାନାର କଟୀଜଙ୍ଗ ଗ୍ରାମ । ଚାରିପଟେ ଜଳ ପାଟ, ଦୁଇ ପାଖରେ ଛୋଟ ଛୋଟ ଝୋର ମାହାଳ, ମଝିରେ ବସ୍ତି । ସେଇ ବସ୍ତିର କୁମ୍ଭକାର ସାହିରେ ତାଙ୍କର ତିଆରି ହୋଇଛି ଛଟୀଘର । ଅନେକ ଦିନ ତଳର କଥା, ବର୍ଷାଋତୁ, ୧୯୨୫ ମସିହା ଜୁଲାଇ ପନ୍ଦର ତାରିଖରେ କୁଆଁ କୁଆଁ ରବ ଶୁଭିଲା ବିଶ୍ୱନାଥ ବେହେରାଙ୍କ ଘରେ । ଶ୍ରୀମତୀ ସ୍କନ୍ଦ ଦେବୀ ପୁତ୍ର ମୁଖ ଦେଖି ହସି ଉଠିଲେ । ବିଶ୍ୱନାଥ ବେହେରା ମଧ୍ୟ । ବିଶ୍ୱନାଥ ବେହେରାଙ୍କର ପୂର୍ବରୁ ପାଞ୍ଚୋଟି ସନ୍ତାନ ବାହୁଡ଼ି ଯାଇଥିଲେ । ଦୁଃଖରେ ଭାଙ୍ଗି ପଡ଼ିଥାନ୍ତି ନବଜାତ ଶିଶୁ ପୁତ୍ରର ମୁଖ ଦେଖି ତାଂକ ମନ ଆନନ୍ଦରେ ଶିହରି ଉଠିଲା ।

ନିଜର ବୃତ୍ତି ମୃଣ୍ମୟ ଶିଳ୍ପକୁ ଆଧାର କରି କୁଟୁମ୍ବ ପୋଷନ୍ତି । ସନ୍ଧ୍ୟା ସମୟରେ ପିଣ୍ଡାରେ ବସି ଛାନ୍ଦ ଚୌପଦୀ ଓ ଭଜନମାନ ପଢନ୍ତି । ଏଭଳି

ସାହିତ୍ୟ ପ୍ରୀତି ଓ ଭକ୍ତିଭାବ ଯୋଗୁ ଗାଆଁର ଆଖପାଖରେ ବେଶ୍ ଜଣାଶୁଣା ଥିଲେ । ଶ୍ରୀମତୀ ଚନ୍ଦ୍ର ଦେବୀଙ୍କ ଅନୁରୋଧରେ ବିଶ୍ୱନାଥ ପୁତ୍ରର ନାଁ ରଖିଲେ ଜଗନ୍ନାଥ । ନାମକରଣ ଦିନ ଗାଇଭାଇ ସମସ୍ତେ ଆନନ୍ଦିତ । ବାପ ମାଆ ମଧ୍ୟ ବେଶ୍ ଖୁସି କୁଳ ନନ୍ଦନକୁ କୋଳରେ ପାଇ ।

ପାଞ୍ଚବର୍ଷରେ ଗାଁ ଚାଟଶାଳୀରେ ସିଧାଧରି ଉପସ୍ଥିତ-ହେଲେ ବାଳକ ଜଗନ୍ନାଥ । ଗୋଟିଏ କଂସା ଥାଳୀରେ ମାଣେ ଉଷୁନା ଚାଉଳ, ଗୋଟେ ଗୁଆ, ହଳଦୀଗୁଣ୍ଡ, ଦୁବ ବରକୋଳି ପତ୍ର, ଭୋଗ ସାମଗ୍ରୀ, ପୁଣି ଦକ୍ଷିଣା ବାବଦରେ କିଛି ପଇସା; ଏହାକୁ ସିଧା ବୋଲାଯାଏ । ଏ ସିଧାକୁ ଅବଧାନେ ନିଅନ୍ତି । ଏଇ ଅବଧାନରେ ଆଗେ ଚାଟମାନେ ଖଡି ଛୁଇଁଥିଲେ । ଗିଲିଦଣ୍ଡା ଭଳି ପଥର ଖଡି । ସେ ଖଡିକୁ ମୁଠାଇ ପିଲାମାନେ ୦ ମଣ୍ଡଳୀ କାଟନ୍ତି । ଯାହାକୁ ଗୁରୁ କହନ୍ତି ବ୍ରହ୍ମା ବିଷ୍ଣୁ ମହେଶ୍ୱର । ସେଦିନ ସକାଳେ ଚାଟ ଜଗନ୍ନାଥ ତିନିଟା ଶୂନ୍ୟ ମଣ୍ଡଳୀ ଉପରେ ଖଡିରେ ମଡାଣ ଶିଖିଲେ । ବର୍ଷକ ପର୍ଯ୍ୟନ୍ତ ଲେଖାପଢା ଶିଖିଲେ ଚାଟଶାଳୀରେ ।

ତାଙ୍କ ବାପା ବିଶ୍ୱନାଥବାବୁ ଗାଁ ପାଖ ସରକାରୀ ନିମ୍ନ ମାଧ୍ୟମିକ ବିଦ୍ୟାଳୟରେ ଦ୍ୱିତୀୟ ଶ୍ରେଣୀରେ ପୁଅର ନାଁ ଲେଖାଇଲେ । ଚାଟଶାଳୀ ପାଠ ପରେ ଚାଲିଲା ସ୍କୁଲ ପାଠ । ସେଇ ସମୟରେ ଛାତ୍ର ଜଗନ୍ନାଥଙ୍କର ପାଲା ପ୍ରତି ଶ୍ରଦ୍ଧା ହେଲା । ପାଲା ଶୁଣିବା ପାଇଁ ସେ ଆଗ୍ରହୀ ହେଲେ । ବାପା ମା'ଙ୍କର ସାହିତ୍ୟ ପ୍ରୀତିର ପ୍ରଭାବ ପଡିଲା ପୁତ୍ର ଉପରେ । ପାଲା ଗାୟକମାନଙ୍କୁ ଗଣ-ଶିକ୍ଷକ ଭାବେ ଲୋକେ ସମ୍ମାନ ଦିଅନ୍ତି । ଏଇଭଳି ପାଲା ଗାୟକଙ୍କ ମର୍ଯ୍ୟାଦା ବେଶ୍ ଜଣାଶୁଣା ।

କୁଜଙ୍ଗ ଅଞ୍ଚଳରେ ଖ୍ୟାତନାମା ଗାୟକ ଉଦୟ ଦାସ, ଘନଶ୍ୟାମ ଦାସ ଓ ଭଗବାନ ସିଂହ ପ୍ରତିଷ୍ଠା ଅର୍ଜନ କରିଥା'ନ୍ତି । ସେମାନଙ୍କ କୃତି ଓ କୀର୍ତ୍ତି ଏପର୍ଯ୍ୟନ୍ତ ଲୋକ ତୁଣ୍ଡରେ ଚର୍ଚ୍ଚିତ । ଏଇଥି ପାଇଁ ସେମାନେ ଅମର । ଭଗବାନ ସିଂହ ଜଣେ ସଂସ୍କାରକ ଗାୟକ ଥିଲେ । ସ୍ୱାଧୀନତା ସଂଗ୍ରାମୀ ମଧ୍ୟ । ପାଲା ଆସ୍ଥାନରେ କାଣ୍ଡ ପରିବର୍ତ୍ତେ କଂଗ୍ରେସ ପତାକା ଉଡାଇ ପାଲା ଗାନ କରୁଥିଲେ । ପାଲାରେ ଅସହଯୋଗ ଆନ୍ଦୋଳନର ବାର୍ତ୍ତାକୁ ପ୍ରଚାର କରୁଥିଲେ । ଜାତି ଓ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ଚୌପଦୀ ସଙ୍ଗୀତ ଗାନ କରି ଶ୍ରୋତାମାନଙ୍କୁ ବିସ୍ମିତ କରି ଦେଉଥିଲେ ।

ସେଇ ପ୍ରଖ୍ୟାତ ଗାୟକଙ୍କ ପାଲା ଶୁଣି ଛାତ୍ର ଜଗନ୍ନାଥ ନିଜେ କିଭଳି ଗାୟକ ଭବେ ମଣ୍ଡପରେ ଠିଆ ହେବେ, ଏଇ ଅଭିଳାଷ ତାଙ୍କ ମନରେ ଜାଗି ଉଠିଲା । ଛୁଟି ଦିନ ଛାତ୍ର ଜଗନ୍ନାଥ ମୁଣ୍ଡରେ କଦଳୀ ପଟୁକା ଟୋପିରେ ପାଗ ପର ଖୋସି, ଆମ୍ବ ଡାଳକୁ ଚାମର କରି ସାଙ୍ଗ ମାନଙ୍କ ଗହଣରେ ପାଲା ଗାଇବା ଆରମ୍ଭ କଲେ । ସେଇ ବାଲ୍ୟ ଜୀବନର କୃତି ଏବେ ତାଙ୍କ କୀର୍ତ୍ତିର ସ୍ୱାକ୍ଷର ବହନ କରିଛି । ଛଣ ଗଦା ପାଖରେ ନିଜାଅନରେ ଯେଉଁ ଜଗନ୍ନାଥ ପାଲା ଗାୟନ କରୁଥିଲେ ବର୍ତ୍ତମାନ ଉତ୍କଳର କୋଣ ଅନୁକୋଣରେ ଗାୟକ ବିଶାରଦ ଭାବରେ ପରିଚିତ ।

ଦିନ ଗଡ଼ଯାଏ ପଣା କାଠି ପରି । ଏମିତି କିଛି ବର୍ଷ ପରେ ପାଠପଢ଼ା ସାଥେ ସାଥେ ପାଲା ଶିକ୍ଷାରେ ମନ ଦେଲେ ଯୁବକ ଜଗନ୍ନାଥ । ନିଜ ଗ୍ରାମର ଅର୍ଜୁନ ଚରଣ ବଶ୍ୱାଳ ଓ ହରେକୃଷ୍ଣ ସ୍ୱାଇଁଙ୍କ ଉପଦେଶରେ ଜଗନ୍ନାଥ ପାଲା ଶିଖିବାରେ ଲାଗି ପଡ଼ିଲେ । ପିତା ବିଶ୍ୱନାଥ ମଧ୍ୟ ସମ୍ମତି ଜଣାଇଲେ । ପାଲାରେ ସଂସ୍କୃତ ସାହିତ୍ୟ ଆଲୋଚନା ଏକାନ୍ତ ଅପରିହାର୍ଯ୍ୟ ଯୋଗୁ ଖଡ଼ଗ୍-ପୁର ଲକ୍ଷ୍ମୀ ଟୋଲର ପଣ୍ଡିତ କୃପାସିନ୍ଧୁ ଆଚାର୍ଯ୍ୟଙ୍କ ନିକଟରେ ସଂସ୍କୃତ ଅଧ୍ୟୟନ କଲେ । ଯାହା ବର୍ତ୍ତମାନ ଶାସ୍ତ୍ରୀ ସହ ତୁଳନୀୟ ।

ଗାୟକରତ୍ନ ହରି ନାଥଙ୍କ ଗତି ଅଭିନୟ, ନିରଞ୍ଜନ କରଙ୍କ ଉପସ୍ଥିତ ବୁଦ୍ଧି ତଥା ଅନ୍ୟ ଗାୟକ ମାନଙ୍କ ପ୍ରତି ମଧୁର ସମାଲୋଚନା, ବୈଷ୍ଣବ ପ୍ରଧାନଙ୍କ ଉଦାହରଣ ବହୁଳ ଆଳଂକାରିକତା, ଲୋକନାଥ କରଂକ ଆଶୁ କବିତା ତାଙ୍କ ଜୀବନକୁ ପ୍ରଭାବିତ କରିଛି ବୋଲି ଜଗନାଥ ବାବୁ ସ୍ୱୀକାର କରିଛନ୍ତି । ଯାହାହେଉ, ଜୀବନରେ ବହୁ ମଣ୍ଡପରେ ପାଲା ଗାଇ ଯଶସ୍ୱୀ ହୋଇଛନ୍ତି । ବିଶେଷ କରି ଜଗନାଥ ବାବୁ ଯୁଗପୋଯୋଗୀ ପାଲା ପରି-ବେଷଣରେ ସର୍ବଶ୍ରେଷ୍ଠ ଗାୟକ ଅଟନ୍ତି ।

ରେଭେନ୍‌ସା କଲେଜ, ଉଦ୍ରକ କଲେଜରୁ ଗାୟକ ଶେଖର ଓ ଗାୟକ ବିଶାରଦ ଉପାଧି ଲାଭ କରିଛନ୍ତି । ନନ୍ଦିନୀ ଶତପଥୀଙ୍କ ମୁଖ୍ୟମନ୍ତ୍ରୀତ୍ୱ ବେଳେ ସାଂସ୍କୃତିକ ମେଳାରେ ଗାୟକ ଯୁଗଜ୍ୟୋତି ଓ ଢେଙ୍କାନାଳ ନଗର ତରଫରୁ ସାହିତ୍ୟ ଭୂଷଣ ଓ ଅର୍ଥ ପାଇଛନ୍ତି । ବର୍ତ୍ତମାନ ଶ୍ରୀ ନୀଳାଚଳ ନିଖିଳୋତ୍କଳ ପାଲା ଗାୟକ ପରିଷଦର ସଭାପତି ଅଟନ୍ତି । ଏତଦ୍ ବ୍ୟତୀତ ଏରସମାର ସ୍ୱଭାବ ସାହିତ୍ୟ ସମିତିର ସଭାପତି ଅଛନ୍ତି । ତାଙ୍କ ରଚିତ ପୁସ୍ତକ ମଧ୍ୟରେ ରତ୍ନଗିରି, ଯୌତୁକ ଯାତନା ଓ ପାଲାର କ୍ରମ ପରିଣାମ ପ୍ରଧାନ ଅଟେ ।

ସର୍ବୋପରି ଗାୟକ ଜଗନ୍ନାଥ ଜଣେ ସଙ୍ଗଠକ ଭାବେ ମଧ୍ୟ ସୁନାମ ଅର୍ଜନ କରିଛନ୍ତି ।

# ବନ୍ଦନା ବିଶ୍ୱେଶ୍ୱରୀଙ୍କୁ

● ଗାୟକ ବିଶାରଦ ଜଗନ୍ନାଥ ବେହେରା

---

ବିଶ୍ୱେଶ୍ୱରୀ ଭଗବତୀ ଶକ୍ତି ସ୍ୱରୂପା ବୈଷ୍ଣବୀ,
ବିନତି ମିନତି ଘେନ ବିଶ୍ୱ ମୋହିନୀ ମାଧବୀ ।୦।

ବିଶ୍ୱ ବୀଜ ସ୍ୱରୂପିଣୀ,
ମା ଗୋ ବିଦ୍ୟା ପ୍ରଦାୟିନୀ,

ବିଚିତ୍ର ଲୀଳା କୁଶଳା ନାରୀ ସ୍ୱରୂପେ ସଂଭବୀ ।୧।

ବିଶେଷ କାର୍ଯ୍ୟ ସଂପନ୍ନା
ତିନିପୁରେ ଅଗ୍ରଗଣ୍ୟା,

ବିବୁଧ ବୃନ୍ଦ ବନ୍ଦନୀ କି ବର୍ଣ୍ଣିବି ତୋର ସ୍ତବ ।୨।

ବିଦ୍ୱେଷ ବିଷ-ଅନଳ
ଦହେ ଭୁବନ ମଣ୍ଡଳ

ବିଶ୍ୱ ହିତେ ମହାମାୟା ଜାଗ ଭବାନୀ ଭୈରବୀ ।୩।

ବିରାଜୁ ଶାନ୍ତି-ମମତା
ବିକଶି ଉଠୁ ସମତା

ବିସ୍ମରିଲେ ଜଗ ଜବି ଆଦ୍ୟ ପ୍ରାନ୍ତେ ଅକ୍ଷରବ ।୪।



ରିଜନାଲ ଇଂଜିନିୟରିଂ କଲେଜ କ୍ୟାମ୍ପସ୍
ରାଉରକେଲା-୭୬୯୦୦୮

# ପାଲା

● ମହାପାତ୍ର ଯତୀନ୍ଦ୍ର କୁମାର

---

ପିଲା ଦିନୁ ରାଧାନାଥ ଗ୍ରନ୍ଥାବଳୀକୁ ମୁଁ ପାଲା ମାଧ୍ୟମରେ ପଢ଼ି ଥିଲି । ତାହା ମୋ ଜ୍ଞାନ ବୃଦ୍ଧିରେ ସହାୟକ ହୋଇ ଥିଲା । ଗାୟକ, ବାୟକ, ପାଳିଆ ରାଧାନାଥ ଗ୍ରନ୍ଥାବଳୀର ' ଉଷା'' ବୁଝାଉଥିବା ବେଳେ ଭିନ୍ନ ପରିସ୍ଥିତିରେ ଅନ୍ୟ କବିମାନେ କୋଉଠି କ'ଣ ଲେଖିଛନ୍ତି ସେ ଉଦାହରଣ ସବୁ ଦେଇ ଆସର ଜମାଉ ଥିଲେ । ଶିକ୍ଷିତ-ଅଶିକ୍ଷିତ ସମସ୍ତେ ସେଇ ରସ ଉପଭୋଗ କରୁଥିଲେ । ପାଲା ନିଶ୍ଚିତ ଭାବରେ ଗଣ-ମାଧ୍ୟମ । ଏଥିରେ ଖର୍ଚ୍ଚ କମ୍ । ସିନ୍ ସିନେରୀ ଦରକାର ନାହିଁ । ମଞ୍ଚ-ନିର୍ମାଣ ଅନାବଶ୍ୟକ । ଖରଦିନେ ଖାଲି ପେଟ୍ରୋମେକ୍ସ-ଟିଏ ଜାଳି ଦରୀ ବିଛାଇ କରି ହେବ । ଷ୍ଟେଜ୍ ଟେକନିକ୍, ଅନେକ ରକମାରୀ ବାଦ୍ୟ-ଯନ୍ତ୍ର, ବିଭିନ୍ନ ପ୍ରକାର ଆଲୋକ ସମ୍ପାତ ଭଳି ଅଦରକାରି ଖର୍ଚ୍ଚ ନାହିଁ । ଲୋକଙ୍କ ମନ ଅଭିନିବିଷ୍ଟ ହୁଏ କେବଳ ବିଷୟ-ବସ୍ତୁ ଉପରେ । ବିଷୟ-ବସ୍ତୁ ପ୍ରାଧାନ୍ୟ ପାଏ । ବିଷୟବସ୍ତୁ ହିଁ ପ୍ରଧାନ ଆକର୍ଷଣ । ମନ ଅବିଚଳିତ ରହେ । ନିର୍ଦ୍ଦିଷ୍ଟ ଏକ ସ୍ୱାଦକୁ ଉପଭୋଗ କରେ । କେବଳ ସେହି ସ୍ୱାଦ ହିଁ ସ୍ୱାଦିଷ୍ଟ ମନେ ହୁଏ ।

ସାହିତ୍ୟକୁ ସବୁଠାରୁ ବେଶୀ ଜନତା ପାଖରେ ପହଞ୍ଚାଇଛି ପାଲା । ଆଗକାଳରେ ସାହିତ୍ୟ କହିଲେ ସଂଗୀତକୁ ବୁଝାଉ ଥିଲା । ନାଟକକୁ କୁହା-ଯାଉଥିଲା "ଗୀତାଭିନୟ ।" ସଂଳାପ ଥିଲା ଛନ୍ଦହୀନ କବିତା । କାନେ କାନେ ମନେ ମନେ, ସେଗୁଡ଼କ ଅନୁରଣିତ ହେଉଥିଲା । ତାହାର ପ୍ରଭାବରେ ଅକବି ମଧ୍ୟ କବି ହୋଇ ଯାଉଥିଲେ ।

ପାଲାକାରଙ୍କ ଭିତରେ କେତେକ ଆଶୁ କବି ଥିଲେ । ସେମାନେ

ନିଜେ ମଧ୍ୟ ହଠାତ ଗୀତ ଭଣିଦେଇ ଗାଉଥିଲେ । ପାଲକାରଙ୍କୁ ମନେ କରା ହେଉଥିଲା ଶ୍ରେଷ୍ଠ କଳାକାରଙ୍କ । ପିଲା ଜନ୍ମ ହେଲେ ତା'ର ଜନ୍ମ-ପତ୍ରିକା ନିର୍ମାଣ "ପିଲାର କଳାକାର ହେବା ନକ୍ଷତ୍ର ଯୋଗ" ଥିଲେ କହୁଥିଲେ "ସେ ପାଲା କରିବ ।" ତା'ମାନେ 'ତାହାର କଳାକାର ହେବା ଯୋଗଅଛି ।" ଯୁଧ୍ୟମାନ ଦୁଇ ପକ୍ଷର ଯୁକ୍ତି ତର୍କକୁ ବୁଝା ଯାଉଥିଲା 'ଏଠି ବାଦୀପାଲା ଲାଗିଛି ।'

ନିଶ୍ଚିତ ଅବସରେ ପାଲାକାରଙ୍କ ଭିତରେ ବାଦୀପାଲା ଥିଲା ଖୁବ୍ ଉତ୍ତେଜକ । ମୁଁ ପିଲା ଦିନେ ଏସବୁ ଦେଖିଛି । ଦୁଇ ଦଳ ରଣ-କ୍ଷେତ୍ରରେ ଅବତୀର୍ଣ୍ଣ । ଥାଟ-ପଟାଳି ଲୋକ ଭିଡ଼ । ଲୋକେ କେତେବେଳେ ଏ ପକ୍ଷକୁ, କେତେବେଳେ ଅପର ପକ୍ଷକୁ ସମର୍ଥନ ଜଣାଉ ଥିବେ କରତାଳି ଆଉ ରିମାର୍କ୍ ମାଧ୍ୟମରେ ତାକୁ ଆମେ "କବି-ଲଢ଼େଇ" କହୁଥିଲୁ । ଅନୁପସ୍ଥିତ କବିମାନଙ୍କ ପ୍ରତିଭାର ବିଚାର କରୁଥିଲେ ପାଲାକାରମାନେ । ମନେ ଅଛି ଜଣେ ପାଲାକାର "ପ୍ରଣୟ-ବଲ୍ଲରୀ" ବୁଝାଉ ବୁଝାଉ ରାଧାନାଥଙ୍କ "ଉର୍ବଶୀ"ର ଉଦାହରଣ ଦେଇଥିଲେ ପଛକୁ ଫେରି ଚାହିଁବା ବ୍ୟାପାରରେ । ପ୍ରେମିକ-ପ୍ରେମିକା ପରସ୍ପର ଠାରୁ ବିଦାୟ ପରେ ନିଶ୍ଚୟ ଟିକିଏ ରହି ଫେରି ଚାହିଁବେ । ଆଜିକାର ପ୍ରେମିକ-ପ୍ରେମିକାମାନେ । ସ୍ୱାଧୀନ । ସେମାନଙ୍କର 'ଆଳ' ଦରକାର ନାହିଁ । କିନ୍ତୁ ସେ ଯୁଗଥିଲା "ସଲଜ୍ଜ-ପ୍ରେମ"ର ଯୁଗ । ସେଥିରେ ଅଧିକ ମାଧୁର୍ଯ୍ୟ ଥିଲା ପ୍ରେମ ଯେଉଁ ମାନେ କରୁଥିଲେ ତାହା ସାଙ୍ଗ-ସାଥୀମାନେ ଜାଣିବା ସେମାନେ ଚାହୁଁ ନଥିଲେ । ତେଣୁ ପଛକୁ ଫେରି ଚାହିଁବା ପାଇଁ ଗୋଟାଏ 'ଛଳନା'ର ଆବଶ୍ୟକତା ଥିଲା । ଶକୁନ୍ତଳା ପଛକୁ ଫେରି ଚାହେଁ ଆଉ ଥରେ ଦୁଷ୍ମନ୍ତଙ୍କୁ ଦେଖିବା ପାଇଁ । ପାଦରେ କଣ୍ଟା ପଶିଯିବାର ଛଳନା କଲା । କୁରୁବକ ଫୁଲ ସେଠାରେ ପଡ଼ିଥିଲା । ଫୁଲ ଯୋଉଠି କଣ୍ଟା ସେଇଠି । ଅତଏବ ତା' ପାଦରେ 'କୁରୁବକ-କଣ୍ଟା' ପଶିଛି । "କୁରୁବକ କଣ୍ଟା ପଶିଗଲା ବୋଲି ସଖୀଙ୍କୁ କହିଲା ଛଳ; ପ୍ରିୟମ୍ବଦା କହେ ପୁରୁବକ କଣ୍ଟା ମୀନାକ୍ଷୀ ଗଲାକି ରଳ ।" ଉର୍ବଶୀ ମଧ୍ୟ ସେଇ ପରି କରିଛି । ତାକୁ ମଧ୍ୟ ସଖୀ-ମାନେ ଥଟ୍ଟାକରି କହିଛନ୍ତି । ସେଠି ପ୍ରକାଶ ଭଙ୍ଗି ଭିନ୍ନ । ଉର୍ବଶୀ କହିଲା ସଖି "ମୋ ବସନ କଣ୍ଟାରେ ଅଟକି ଗଲା ।" "ଅଟକିବ ଜାଣିଥିଲି ଛଟକିନୀ, ସଜନୀ କହିଲା ହସି ।" ଏସବୁ ଗଦ୍ୟ ଆକାରରେ ଲହରେଇ କୁହନ୍ତି ପାଲାକାର ।

ପାଲାକାରଙ୍କ ରାଜକୀୟ ପୋଷାକ, ଜାତିୀୟ ସଂଳାପ, ସାମାନ୍ୟ ବାଦ୍ୟ ଯନ୍ତ୍ର ଝାଞ୍ଜ ମୃଦଙ୍ଗର ତାଳ, ଗାୟକ ବାୟକ ଓ ପାଳିଆଙ୍କ ଜମାୟତ୍, ଏସବୁ କେବଳ ଓଡ଼ିଶାର ନିଜସ୍ୱ । ଯାଜପୁରର କବି ମଞ୍ଜୁଳ କୃଷ୍ଣପ୍ରସାଦ ବସୁ ବହୁ ପାଲାର ଲେଖକ । ରାଉରକେଲାର କବିବର ପରିଡ଼ା ମଧ୍ୟ । ଏଭଳି ଆଉ କେତେକ ଲେଖକ ମଧ୍ୟ ଅଛନ୍ତି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ । ସରକାରଙ୍କ ପକ୍ଷରୁ ପ୍ରଚାର ହେଉଥିବା ଜନ୍ମ ନିୟନ୍ତ୍ରଣ ପାଲା କୌଣସି ଲେଖକଙ୍କୁ ବରାଦ ଦିଆଯାଇ ଲେଖାଯାଏ । ନିର୍ବାଚନ ସମୟରେ ରାଜନୈତିକ ଦଳମାନେ ପ୍ରଚାର ପାଇଁ କେତେକ ପାଲାକାରଙ୍କୁ ନିୟୋଗ କରି ଥାଆନ୍ତି ପ୍ରଚୁର ଅର୍ଥ ବ୍ୟୟକରି । ପାଲାର ପ୍ରଭାବ ଅଛି ଜନସାଧାରଣଙ୍କ ଉପରେ । ଟେଲିଭିଜନରେ ମଧ୍ୟ ପାଲା ପ୍ରଦର୍ଶନ ହେଉଛି ।

ବର୍ତ୍ତମାନ ଓଡ଼ିଶାକୁ ଅନୁକରଣ କରି ଅନ୍ୟ ପ୍ରଦେଶରେ ପାଲା ଆରମ୍ଭ ହେଲାଣି । କେତେକ ବିଷୟରେ ଓଡ଼ିଶାର ବୈଶିଷ୍ଟ୍ୟ ଅଛି । ଯେପରି ଛଉ-ନୃତ୍ୟ । ମୁହଁରେ ମୁଖା ପିନ୍ଧି ଫେସିଆଲ୍ ଏକସ୍‌ପ୍ରେସନକୁ ଏକାବେଳେ ଉଡ଼୍ୟା କରିଦେଇ କେବଳ ଅଙ୍ଗ ସୌଷ୍ଠବ ଉପରେ ଗୁରୁତ୍ୱ ଆରୋପ କରିବା । ଏହା ପୁରାପୁରି ଓଡ଼ିଶାର ନିଜସ୍ୱ । ପରେ ଏହାକୁ ପ୍ରତିବେଶୀ ପ୍ରଦେଶମାନେ ଗ୍ରହଣ କରିଛନ୍ତି । ଆହୁରି ମଧ୍ୟ 'ମୋଗଲ ତାମସା ।' ତାହାକୁ ଅନ୍ୟ ନାମ ଦେଇ କପି କଲେଣି । ଏସବୁକୁ ସଂସ୍କୃତି ଅପେକ୍ଷା ରାଜନୈତିକ ଉଦ୍ଦେଶ୍ୟରେ ବ୍ୟବହାର କରାହେଉଛି ଅଧିକ ଅନ୍ୟାୟ । ଓଡ଼ିଶୀ ନୃତ୍ୟରେ ଅନ୍ୟ ପ୍ରଦେଶରେ ସେକ୍‌ସ-ଏପିଲ୍ ଦିଆ ହେଉଛି । ସାଂସ୍କୃତିକ କ୍ଷେତ୍ରରେ ଓଡ଼ିଶାର ମୌଳିକତା କେବଳ ଓଡ଼ିଶା ଭିତରେ ହିଁ ରହିଛି । ଯେପରି ବଲ୍-ନାଚର ମୌଳିକତା କେବଳ ଗ୍ରେଟ୍ ବ୍ରିଟେନରେ ରହିଛି, ଅନ୍ୟ କେଉଁଠି ନୁହେଁ । ଯେପରି ବୁମେରାଂ ନୃତ୍ୟର ମୌଳିକତା କେବଳ ଅଷ୍ଟ୍ରେଲିଆର ଆଦିବାସୀଙ୍କ ଭିତରେ ଅନ୍ୟତ୍ର ନୁହେଁ । ସେହିପରି ଓଡ଼ିଶାର ଯାହାସବୁ ବୈଶିଷ୍ଟ୍ୟ ତାହାର ନିଖୁଣ ରୂପ ଓଡ଼ିଶାରେ ସଂରକ୍ଷିତ । ଅନ୍ୟତ୍ର ତାହାର ବିକୃତି ଘଟିଛି ।

ଓଡ଼ିଆ ଭାଷାରେ ଜ୍ଞାନ ଆହରଣ କରି ଓଡ଼ିଶା ପାଲାକୁ ବୁଝି ଦେଖି ପ୍ରତିବେଶୀ ପ୍ରଦେଶର ବ୍ୟକ୍ତି ବିଶେଷଗଣ ଏହାକୁ ଅନ୍ୟତମ ଶ୍ରେଷ୍ଠ ଗଣ-ମାଧ୍ୟମ ବୋଲି ହୃଦୟଙ୍ଗମ କରିଥିବା ମୁଁ ଜାଣେ । ପାଲାକୁ ଯିଏ ଯୋଉ

ଭବରେ ବ୍ୟବହାର କରୁନା କାହିଁକି, ପାଲାକୁ ଓଡ଼ିଶାରେ ସାଂସ୍କୃତିକ ଏବଂ ଐତିହାସିକ ପ୍ରଚାର ଉଦ୍ଦେଶ୍ୟରେ କରାଯାଉଛି । ଏହା ଲୋକଙ୍କୁ ଉଦ୍‌ବୁଦ୍ଧ କରେ । ମଢର ମାଳଜୀ ଓଡ଼ିଶାର ଇତିହାସ ଆହୁରି ପ୍ରଚାର ହେବାକୁ ବାକି ଅଛି । ଓଡ଼ିଶାରେ ଘଟିଥିବା ବହୁ ଯୁଦ୍ଧର ଘଟଣା ମଧ୍ୟ । ପାଲା ମାଧ୍ୟମରେ ସେସବୁର ପ୍ରଚାର ହେଉ । ଏପରି ପ୍ରଚାର ହେଉ, ଯାହାଦ୍ୱାରା ଆମର ଉତ୍ତର ପୁରୁଷମାନେ ଉଦ୍‌ବୁଦ୍ଧ ହେବେ, ନିଜକୁ ଭବିଷ୍ୟତ ପାଇଁ ଗଢ଼ିବେ ।



ଏ/୨୧୬, ସେକ୍ଟର-୪,
ରାଉରକେଲା ୨

# ଆମ ପୂର୍ବ ସ୍ମୃତି କଥା

ଶ୍ରୀମତୀ ଶୈଳବାଳା ପୂଜାରୀ

ପଶିଗଲେ ଗ୍ରାମେ ନ ଶୁଭେ ଶବଦ
ବେଦ ମନ୍ତ୍ର କିବା ଭଗବତ ପଦ ।
ଗ୍ରାମବାସୀ ଗଣେ ନାହିଁ ପୂର୍ବ ମେଳ
ଶିଶୁ ଖେଳେ ଦାଣ୍ଡ ନ ହୁଏ ଉଛାଳ ।

x x x x

ନାହିଁ ପୂର୍ବ ବଳ ନାହିଁ ପୂର୍ବ ଧର୍ମ
ନାହିଁ ପୂର୍ଣ୍ଣ ସତ୍ୟ ନାହିଁ ପୂର୍ବ କର୍ମ ।
ଉତ୍କଳ ବାସୀର ଦେଖି ଏ ଦୁର୍ଗତି
ଦାରୁଭୂତ ଏବେ ନୀଳାଚଳ ପତି ।

ଉତ୍କଳର ଗ୍ରାମାଞ୍ଚଳର ଅଧୋଗତି ଦର୍ଶନରେ ଜାତୀୟବାଦୀ ନେତା ଉତ୍କଳମଣି ଗୋପବନ୍ଧୁଙ୍କର ଏହା ଥିଲା ଆତ୍ମାର ବିଳାପ — ଯାହାକୁ ସେ ଅସହଯୋଗ ଆନ୍ଦୋଳନର ନେତୃତ୍ୱ ନେଇ କାରାବରଣ କରିଥିବା ସମୟରେ କାରାଗାରର ରୁଦ୍ଧ କୋଠରୀ ମଧ୍ୟରେ 'ବନ୍ଦୀର ଆତ୍ମକଥା'ରେ ପ୍ରକାଶ କରିଥିଲେ ।

ଗୋପବନ୍ଧୁଙ୍କ ପରେ ଏବେ ସମୟର ରଥ ଚକ ଅନେକ ଆଗକୁ ଗଡ଼ ଯାଇଛି ଏବଂ ଛାଡ଼ ଯାଇଛି ନିରଶା ନିରାନନ୍ଦର ଯେତେ ସବୁ ଚିହ୍ନ । ସେତେ-ବେଳଠାରୁ ଆମର ଗ୍ରାମ୍ୟ ଜୀବନର ଦୁଃଖ ଦୁର୍ଦ୍ଦଶା ଅଧିକ ମାତ୍ରାରେ ବଢ଼ ଯାଇଛି ସିନା ହ୍ରାସ ପାଇବାର ଜଣାଯାଏ ନାହିଁ । ଜାତିର ଜନକ ମହାତ୍ମା ଗାନ୍ଧି ଏବଂ ଉତ୍କଳମଣି ଚିନ୍ତା କରୁଥିଲେ ସେଥିରେ ଆଦର୍ଶ ଗ୍ରାମକୁ ହିଁ ରାମ

ରାଜ୍ୟର ଉତ୍ପତ୍ତି ସ୍ଥଳ ବୋଲି ବିଶ୍ୱାସ କରୁଥିଲେ  ତେଣୁ  ଗ୍ରାମ ଗୁଡ଼ିକର ଅଧଃ-ପତନରେ ପ୍ରାଣ ତାଙ୍କର ବିକଳି ଉଠୁଥିଲା ।  କରୁଣ ଅଭିବ୍ୟକ୍ତି ଫୁଟି ଉଠୁଥିଲା କବିତା ଭିତରେ ।

ବାସ୍ତବିକ ପୂର୍ବ କାଳରେ ଗ୍ରାମ ଗୁଡ଼ିକ ହିଁ ଯଥାର୍ଥରେ ସତ୍ୟ, ଧର୍ମ, ଶାନ୍ତି, କର୍ମ, ପ୍ରେମ, ମୈତ୍ରୀ, ଐକ୍ୟ, ପ୍ରୀତି ସବୁରି ଉତ୍ସ ଥିଲା ଏବଂ ଏ ସବୁର ପ୍ରତିଷ୍ଠା ମୂଳରେ ସାହାଯ୍ୟ କରୁଥିଲା ଗ୍ରାମରେ ପ୍ରତିଷ୍ଠିତ ତଥା ପ୍ରଚଳିତ ଧର୍ମ ସଂସ୍କୃତି କଳା । ଗ୍ରାମର ଭାଗବତ ଟୁଙ୍ଗି, ଦେବାଳୟର ରାମାୟଣ ପାଠ, ଭାଗବତ ଚର୍ଚ୍ଚା, ଆଖଡ଼ା ଘରର ଖେଳ କସରତ ଏବଂ ମୁକ୍ତାକାଶ ତଳେ ଅନୁଷ୍ଠିତ ହେଉଥିବା ପାଲା, ଦାସକାଠିଆ ।

ସବୁରି ଭିତରେ ପାଲା ଗାୟନ ତଥା ପାଲା ପରିବେଷଣ ବହୁକାଳ ଧରି ଆମ କଳା ସଂସ୍କୃତିର ମୂଳାଧାର ଥିଲା, ଗ୍ରାମର ମୁକ୍ତାଙ୍ଗନରେ ପାଲା ପରିବେଷଣ କରଯାଉଥିବା ବେଳେ ଆବାଳ ବୃଦ୍ଧ ବନିତା ଧନ ମନ ବଡ଼ପଣ ତଥା ଜାତିଆଣ ଭେଦଭାବର ସଂକୀର୍ଣ୍ଣତାର ଊର୍ଦ୍ଧ୍ୱରେ ରହି ବିପୁଳ ଆନନ୍ଦ ଉତ୍ସାହ ମଧ୍ୟରେ ଉପଭୋଗ କରୁଥିଲେ ଏବଂ ଏହାରି ମାଧ୍ୟମରେ ପ୍ରତିଷ୍ଠା ହେଉଥିଲା ଗ୍ରାମ୍ୟ ଜୀବନରେ ସଂହତି, ଏକତା ସୁଖ ଶାନ୍ତି । ଏହି ପାଲାର ଉତ୍କୃଷ୍ଟତା କେବଳ ଉତ୍କଳର ପୁରପଲ୍ଲୀ ମଧ୍ୟରେ ସୀମାବଦ୍ଧ ନଥିଲା । ଉତ୍କଳର କଳା ପ୍ରେମୀ, ସଂସ୍କୃତି ପ୍ରେମୀ ରାଜା ମହାରାଜା ଶାସକ ଗଣଙ୍କ ପୃଷ୍ଠପୋଷ-କତାରେ ରାଜ୍ୟର ବିଭିନ୍ନ ପ୍ରାନ୍ତରରେ ତଥା ରାଜ୍ୟ ବାହାରେ ମଧ୍ୟ ଏହା ଉତ୍କୃଷ୍ଟ ଉତ୍କଳୀୟ କଳାର ନିଦର୍ଶନ ଭାବରେ ପାଉଥିଲା ଅଜସ୍ର ସମ୍ମାନ ।

ଆଜି କାଳର କରାଳ ଗର୍ଭରେ ଉତ୍କଳର ଗରିମାମୟ ଅତୀତର ଅନେକ ସୁବର୍ଣ୍ଣ ସ୍ମୃତି ଲୋପ ପାଇଯିବା ଭଳି । ଏହି ପାଲା ସଂସ୍କୃତିର ଯଶ, ଗୌରବର-ଝଲକ ମଳିନ ପଡ଼ଯାଇଛି । ବିଜ୍ଞାନର କରାମତି ଏବଂ ଆଧୁନିକ ଚକଚକ୍ୟ ତଥା ଆଡ଼ମ୍ବରର ମୋହ ଆମକୁ ପଶ୍ଚାତମୁଖୀ ନ ହେବାକୁ ବାଧ୍ୟ କରୁଛି ଏବଂ ନଗ୍ନ ଚଳଚ୍ଚିତ୍ର, ଭିଡିଓ ତଥା ଟେଲିଭିଜନର ଆକର୍ଷଣ ଆମକୁ ଅନ୍ଧ କରିଛି । ନିଜସ୍ୱ ସଂସ୍କୃତିର ବିକାଶ ପାଇଁ ସତେ ଅବା ସମୟ ଏବଂ ଶକ୍ତି ଆମର ନାହିଁ ।

ଅନ୍ୟ ଦିଗରୁ ନିରିକ୍ଷଣ କଲେ ଜଣାଯାଏ ଯେ ଆମ ସଂସ୍କୃତିର ଜନ୍ମ

କ୍ଷେତ୍ର ଏହି ଗ୍ରାମଗୁଡ଼ିକ ମଧ୍ୟରେ ଆଜି ଅନର୍ଥ, ଅଶାନ୍ତ, ହିଂସା, କପଟତା ସ୍ୱାର୍ଥପରତାର ନିଆଁ ଜଳି ଚାଲୁଛି । ଆଜିର କଳୁଷିତ ରାଜନୀତି ଏବଂ କଣ୍ଟ-କିତ ସାମାଜିକ ବ୍ୟବସ୍ଥା ଏ ସବୁକୁ ଇନ୍ଧନ ଯୋଗାଇ ଦେଉଛି । ତେଣୁ ବର୍ତ୍ତମାନର ପରିସ୍ଥିତିରେ ଏହି ଲୁପ୍ତ ପ୍ରାୟ କଳା-ପାଲା ପରିବେଷଣକୁ ପୁନର୍ବାର ଉଜ୍ଜୀବିତ କରି ଜୀବନ୍ୟାସ ଦେଲେ କେବଳ ଯେ ଗ୍ରାମବାସୀ ପୂର୍ଣ୍ଣିମା ରାତ୍ରିର ଜ୍ୟୋତ୍ସ୍ନାଲୋକ ତଳେ ଆପଣା ସଂସ୍କୃତିକୁ ତଥା କଳାକୁ ଆନନ୍ଦ ବିଭୋର ହୋଇ ଉପଭୋଗ କରିବେ ଏବଂ ଗ୍ରାମର ଲୁପ୍ତଗୌରବ ସେଇ ଏକତା ପ୍ରେମ ଫେରି ଆସିବ ତା ନୁହେଁ ବରଂ ଜାତିର ଜନକ ମହାତ୍ମା ଗାନ୍ଧି ଏବଂ ଉତ୍କଳ-ମଣି ଗୋପବନ୍ଧୁଙ୍କର ସ୍ୱପ୍ନର ରାମରାଜ୍ୟ ଗଢ଼ିବାରେ ତାହା ପଥ ପ୍ରଦର୍ଶକ ହେବ ।

ଅନ୍ୟ ଦୃଷ୍ଟିରୁ ଦେଖିବାକୁ ଗଲେ ଉତ୍କଳୀୟ କଳା ମଧ୍ୟ ତା'ର ଅତୀତର ଯଶ ପତାକା ଉଡ଼ାଇବାରେ ସକ୍ଷମ ହେବ । ତେଣୁ ଆଜି ଆମେ ଆନ୍ତରିକତାର ସହ ଏ ଦିଗରେ ଚେଷ୍ଟାବାନ ହେବା ଉଚିତ ଏବଂ ଯେଉଁମାନେ ଚେଷ୍ଟାବାନ ହେଉଛନ୍ତି ତାଙ୍କୁ ସକଳ କ୍ଷେତ୍ରରେ ସାହାଯ୍ୟ ସହଯୋଗ କରିବା ଉଚିତ ।



# ମାତ ଶାରଦା

● ମହେଶ୍ୱର ପଣ୍ଡା, ଏମ୍.ଏ.

ଜୟ ମାତ ବୀଣାପାଣି .... ସୁଖ ଶାନ୍ତି ପ୍ରଦାୟିନୀ ।।
ଦୁଃଖ ଦୈନ୍ୟ ବିନାଶିନୀ .... ଆର୍ତ୍ତ ତାରିଣୀ,
ଯୁଗେ ଯୁଗେ ତୁମ ନାମ .. ନେଇ ଗଢେ ଭବ୍ୟଧାମ,
ଉଜଳଇ ଗୁଣ କାମ -- ମୁକ୍ତିଦାୟିନୀ,
ତୁହି ମା ଗୋ ବିଶ୍ୱବନ୍ଦିତା ।
ଶ୍ୱେତ-ପଦ୍ମାସନା ପରଂବ୍ରହ୍ମ ନନ୍ଦିତା ।୧।

ପାଇ ତୁମ କୃପା ମୋତି ... କାଳିଦାସ ଭବଭୂତି....
ଭଞ୍ଜକବି ଯଶକୀର୍ତ୍ତି ରଖିଲେ ପର,
ବ୍ରହ୍ମା ବିଷ୍ଣୁ ଦେବଦେବ .. ପାଇ ତୁମ ମହାଭବ,
ଏଡ଼ ଶତ ପରଭବ ସେବିଲେ ପର,
କୁନ୍ଦଇନ୍ଦୁ-ମାଳ-ଧବଳା,
ବିଶ୍ୱ ବିମୋହିନୀ ମାତ ଜ୍ଞାନ-ଉଜ୍ଜ୍ୱଳା ।୨।

କାଳେ କାଳେ ତୁମ ଗୁଣ ... ଗାଇ କବି ଯୋଗୀଗଣ,
ପୂଜିଲେ ତୁମରି ନାମ ହେ ଭଗବତୀ,
ନେଇ ପଦଧୂଳି ତୁମ ... ହୋଇ ଧନ୍ୟ ସର୍ବଜନ,
ରଖିଲେ ନିଜ ସୁନାମ.... ତୁଟେ ବିପତ୍ତି ।
ବିଶ୍ୱବନ୍ଦ୍ୟା ମାତ ଶାରଦା !
ଜ୍ଞାନାଲୋକ ଦେଇ ନାଶ ଅଜ୍ଞାନ ସଦା ।୩।

ଏ/୧୪୩, ସେକ୍ଟର-୪,
ରାଉରକେଲା-୨



# ଗୋଟିଏ ଚୌପଦୀ

ଡକ୍ଟର ଧୋବେଶ ଚନ୍ଦ୍ର ମିଶ୍ର

ଦେଖି ଆଖି ଲାଖି ଗଲାରେ ...
ବ୍ରଜ ବଂଧୁଙ୍କୁ (ଘୋଷ)
ପିନ୍ଧିଛି ପୀତ ବସନ
ସେ ଶ୍ୟାମଳ ନବଘନ,
ପଲକଟା' ବୁଲେ ଖେଳ ପ୍ରଣୟିନୀଙ୍କୁ ।୧।
ଶିରେ ମୟୂର ଚନ୍ଦ୍ରକା
ଭାଳେ କୁଙ୍କୁମର ଟୀକା
ହାଣୁଛି ସନ୍ଧାଣୀ ଟାଣି ଭୂରୁଧନୁକୁ ।୨।
ବାଇଡା ବଂଶୀରେ ସ୍ୱନ
ହରି ନେଲା ମୋର ମନ
ବେପଥୁରେ ଭରିଦେଲା ତ ମନକୁ ।୩।
ଲାଜେ ମୁଁ ପୋତିଲି ମଥା
କହି ନ ପାରିଲି କଥା
ଜଡ଼ାଇଲା ବାହୁଲତା ଟାଣି କୋଳକୁ ।୪।



# କାହ୍ନୁ – କଳାମାଣିକ

● ଅଧ୍ୟାପକ ଶ୍ରୀଚରଣ ମହାନ୍ତି

---

( ୧ )

କୃଷ୍ଣ ଅଷ୍ଟମୀ ତିଥିରେ                    କଂସରଜା ବନ୍ଦୀ ଘରେ,
ଦେବକୀ ଗର୍ଭରୁ ପ୍ରଭୁ ଜନମ ହେଲେ,
ଫିଟିଲା ଲୁହା ଶିକୁଳି                    ଖୋଲିଲା ଲୁହା ଅର୍ଗଳି
ବସୁଦେବ ଶିରେ ଘେନି ବାହାରି ଗଲେ,
ପହଞ୍ଚିଲେ ଗୋପ ସୀମାରେ,
ବାଟେ ଉଗ୍ରସେନ ରଜା ଉଗାଳ କଲେ । ୧ ।

ପ୍ରବିମେଘ ଠୂଳ ହୋଇ                    ବାରି ବରଷନ୍ତ ରହି,
ଗୋପପୁର ପଥ ଦିଶେ ସାଗର ପ୍ରାୟେ,
ପ୍ରଭୁ ଦୟାରେ ଜଳଧି                    ଲଂଘି, ବସୁଦେବ ବିଧି
ଅନୁସାରେ, ନଂଦ ଦ୍ୱାରେ ପ୍ରବେଶ ହୁଏ,
ପୁତ୍ର ରଖି କୁମାରୀ ନେଇ,
ବନ୍ଦୀ ଶାଳେ ପ୍ରବେଶନ୍ତେ ଗୋଳ ଜଗଇ । ୨ ।

ଦୂତମୁଖୁ ବାର୍ତ୍ତାପାଇ                    ବେଷ ଭରେ ଭେକ ସାଇଁ
ବନ୍ଦୀ ଶାଳେ ଆସି ବେଗେ ପ୍ରବେଶ ହେଲା,
ବଳେ ନେଇ କୁମାରୀକି                    ପିଟନ୍ତେ ଶିଳାରେ ହେଠ
ହାତୁ ଖସିନ୍ୟୋ ଯାଇ ସେ ଯେ କହିତ ଗଲା
"କଂସ ତୋର ନିଧନ ପାଇଁ
ଗୋପ ପୁରେ ବଢ଼ିଲେଣି କଳା କହ୍ନାଇ" । ୩ ।

( ୨ )

ନଂଦ ଘରେ ଆଜ ଆନନ୍ଦ,

ବିଜେ କରିଛନ୍ତି ଜଗତବନ୍ଦ । ଘୋଷା ।

ବାଜେ ଶଙ୍ଖ ବେଣୁ ଶିଙ୍ଗା  ଗଗନ ଉଚ୍ଛୁଳେ

ଗୋପାଳ କରନ୍ତି ନାଚ ଗୋପିନୀଙ୍କ ମେଳେ ।୧।

ବ୍ରଜନାରୀ ମାନେ ଆଜ  ନନ୍ଦପୁରେ ମିଳି,

ମଙ୍ଗଳ ସଙ୍ଗୀତ ସଙ୍ଗେ ଦଅନ୍ତି ହୁଳହୁଳି  ।୨।

ବୃଦ୍ଧା ଗୋପିନୀମାନଙ୍କୁ ଯଶୋବନ୍ତ ରହିଁ,

ଆଶୀଷ ଦଅ  କହନ୍ତି  ହସହସ  ହୋଇ ।୩।

ନନ୍ଦ ଉପନନ୍ଦ ସାଥେ  ହୁରେ ହୁରେ ଧାଇ,

ସମ୍ଭାର ସଜ କରନ୍ତି ଦଅଁ ପୂଜା ପାଇଁ  ।୪।

( ୩ )

ଜୟ ନନ୍ଦ ନନ୍ଦନ    ଗୋପୀହୃଦ ଚନ୍ଦନ

ବଂଦନା କରେ ପାଦ କଂଜେ,

ଭବ ଦୁଃଖ ଖଣ୍ଡନ    ସନ୍ଥ ହୃଦ ମଣ୍ଡନ

ଦଣ୍ଡଧର ଦଣ୍ଡ ଗଞ୍ଜେ । (ଘୋଷ)

ଅଭିନବ ସୁନ୍ଦର    କରି ନାନା ହୁନ୍ଦର

ଧରଭର ଆଶ୍ୱାସ କାରୀ,

ହେଲେ ଧରି ମନ୍ଦର    ଦର୍ପ ନାଶି ଇନ୍ଦ୍ର

କାଳନ୍ଦୀରୁ କାଳ ବିଷ ହାରୀ । ।୧।

ମାୟା ଜାଲ ବିସ୍ତାରି    ଜନନୀ ହୃଦ କରି

ଯଶୋବନ୍ତ ମନ ଭୁଲାଇଲ,

ମାଟିଖିଆ ବେଳାରେ    ମୁଖ ଦେଖା ଆଳରେ

ଚଉଦ ଭୁବନ ଦେଖାଇଲ ।୨।

ହେ ମହା କପଟିଆ        ଗୋପୀ ବାସ ଲୁଟିଆ,
ଯାମଳା ଅର୍ଜ୍ଜୁନେ ବନ୍ଧା ହେଲ,
କି ଲାଭ ଦେଇଥିଲ        ଅନ୍ଧ ତୁମକୁ ଭଜି,
ତାହାକୁ ଚକ୍ଷୁଦାନ ଦେଲ ।୩।

ଗୁରୁ ଦାନ ଛନ୍ଦରୁ        ଯମରାଜା ଫାନ୍ଦରୁ
ଗୁରୁପୁତ୍ର ପ୍ରାଣ ଘେନି ଆସି,
ତା'କୁ ଦଅ ଜୀବନ        ଜା'ର ହର ପରଣ,
ପୁତନାର ପ୍ରାଣ ନେଲ ଶୋଷି ।୪।

ବ୍ୟୋମା ଅଘା ନାଶିଲ,        ଧେନୁକା ପ୍ରାଣ ନେଲ
ବକାସର ପ୍ରଲମ୍ବା ମାରୀ,
ତୃଣା ଶକଟା ପ୍ରାଣ        କେଶୀ ପିଣ୍ଡ ମର୍ଦ୍ଦନ,
ନନ୍ଦ ନନ୍ଦନ କଂସାରୀ ।୫।

ବୃନ୍ଦାବନ କୁଞ୍ଜର        ହେ ବରଜ ସୁନ୍ଦର
ଶିରେ ବାନ୍ଧ ମୟୁର ଚୂଳ,
କଟିତଟେ କିଙ୍କିଣି        ବାଜଇ ରୁଣୁଝୁଣୀ
ପାଦୁଁ ଶୁଭେ ନୂପୁର ସ୍ୱର ।୬।

କଳାମେଘ ଅଂଗରେ        ପୀତବାସ ସଂଗରେ,
କି ଶୋଭ ଦଶେ ବନମାଳୀ,
ହାତେ ବେଣୁ ମଣ୍ଡନ        ବାରମ୍ବାର ଚୁମ୍ବନ
ଅହରହ ଡାକଦଏ ଗଈ ।୭।

ବନମାଳା ଶୋଭିତ        ଚନ୍ଦନେ ଚର୍ଚ୍ଚିତ
ନୀଳଇଂଦୀ ବର ମୁଖ ନିନ୍ଦେ,
କର୍ଣ୍ଣଦେଶେ କୁଣ୍ଡଳ        ନିନ୍ଦେ ରବିମଣ୍ଡଳ
କାମିନୀ ହୃଦୟ ଗଞ୍ଜେ ।୮।

ଯମୁନା କୂଳରେ        କେଳି କଦମ୍ବ ଡାଳେ,
ଗୋପୀଙ୍କ ବସନ ଲୁଚ୍ଛଇ,
କହି ନାନା ରଙ୍ଗରେ        ମୋହି ନାନା ଭଂଗିରେ,
ରଙ୍ଗ ନାଟ ତୁମେ କଲ ।୯।

ହେ ରାସ ରଞ୍ଜନ           ରାଧା ମାନଭଞ୍ଜନ,
ରସେ ରସି ଗୋପୀଙ୍କର ମନ,
ମୁନୀ ମନ ଆନନ୍ଦ           ହେ ପରମାନନ୍ଦ
ଶ୍ରୀଚରଣ ଭକ୍ତେ ଗତି ଧନ ।୧୦।

( ୪ )

ରାଧା ଦନୋଦଆ ସାଇଁ ହେ ନଟବର କହ୍ନାଇ,
ନବରଙ୍ଗ କେତେ ଲଗାଅ ଗୋପ ପୁରବେ ରହି ।୧।
ଦାନବ ଦଳନ ନିମନ୍ତେ ଦାମୋଦର ଜନ୍ମିଲ
ଗୋପେ ନାନା ନାଟ କରିଲ ଗୋପୀ ମନହରିଲ ।୨।
ତୁମ୍ଭଙ୍କୁ ପରୀକ୍ଷା କରିବା ପାଇଁ ଦେବେ ଅଇଲେ,
କଉତୁକେ ତାଙ୍କୁ ମୋହିଲ ଶେଷେ ଶରଣ ଗଲେ ।୩।
ପରଖିବା ପାଇଁ ଅଇଲେ ଅଗ୍ନି ଏରଣ୍ଡ ବନ,
ବନ ନିଆଁ ଗିଳି ରଖିଲ ଗୋପୀ ଗୋପ ଜୀବନ ।୪।
ବେଦ ବ୍ରହ୍ମା ଆସି ହରିଲେ ବତ୍ସା ବାଳକ ମାନ,
ନିଜ ଅଙ୍ଗୁ ଜାତ କରାଇ ଭଙ୍ଗି ବିଧାତା ଟାଣ ।୫।
ବରୁଣ ହରିଲା ନନ୍ଦଙ୍କୁ ଜଳେ ସ୍ନାହାନ କାଳେ,
ଉଦ୍ଧାର କରିଲ ଶ୍ରୀହରି ନିଜ କରଣି ବଳେ ।୬।
ଇନ୍ଦ୍ର ରଜା ଗର୍ବ ହରିଲ ଗୋବର୍ଦ୍ଧନ ଧାରଣ,
ଗୋପପୁର ରକ୍ଷା କରାଇ ଭଙ୍ଗି ବାସବ ଟାଣ ।୭।
ଗୋପ ବାଳକଙ୍କ ସହିତେ ଧେନୁ ବତ୍ସା ଚରାଇ,
ବୃନ୍ଦାବନେ ଲୀଳା କରିଲ, ପ୍ରଭୁ ଜଗତ ସାଇଁ ।୮।
କୁଞ୍ଜବନେ ରାସ ରଚିଲ ଗୋପୀ ମାନଙ୍କ ସଙ୍ଗେ,
ନାବକେଳୀ ଲବଣୀ ଚୋରୀ ବସନ ଲୁଚ୍ଛ ଭାବେ ।୯।
ରାଧା ପ୍ରାଣଧନ ମୁରଲୀଧାରୀ ରସିକବର,
ମୁରଲୀ ବଜାଇ ଗୋପିନୀ ମନ ହରଣ କର ।୧୦।

କଂସ ଦୂତ ଘେନି ଅଇଲା ଯେବେ ଅକ୍ରୂର ଚଳ,
ଭକତ ଭବରେ ମୋହିଲ ତା' ମନ ବନମାଳୀ ।୧୧।
ଧନୁଯାତ ଦେଖିବା ପାଇଁ ମଥୁରାପୁର ଗଲ,
ଜନନୀ ପିଅନ୍ତେ ଗୋପାଳ ବାଳକ ସଙ୍ଗେ ନେଲ ।୧୨।
କଂସ ଅଷ୍ଟମଲ୍ଲ ଯୁଝିଲେ ତୁମ୍ଭ ସଙ୍ଗତେ ହରି,
ଗୋଟି ଗୋଟି ପ୍ରାଣେ ନାଶିଲ ଶେଷେ ହେଲ କଂସାରି ।୧୩।
ମଧୁପୁର ନାରୀ ମୋହିଲ ଗୋପୀ ରହିଲେ ଦୂରେ,
ନନ୍ଦ ଯଶୋବନ୍ତ ଫେରିଲେ ବିନା ଗୋପ ନଗରେ ।୧୪।
ମଥୁରାରେ ଲୀଳା କରିଲ ଗୋପୀ ଗୋପ ପାଶୋରି,
ଶ୍ରୀଚରଣ କହେ କହ୍ନାଇ ତୁମ୍ଭେ ହରିଅ ଘରୀ ।୧୫।

(୪)

ଆହା ମୋ କାହ୍ନୁ କଳା-ମାଣିକ,
ଗୋପ ଦାଣ୍ଡେ ଶୁଭେ ନଂଦ ଯଶୋଦାଂକ ଡାକ । (ଘୋଷା)
ପାଗଳନୀ ପ୍ରାୟ ଡାକୁ ଥା'ନ୍ତି ଯଶୋବନ୍ତ,
ନଂଦ ବୁଲି କାହ୍ନୁ ଗୁଣ ବଖାଣ କରନ୍ତି । ।।
ଆସ ବାବୁ ଖୋଇ ଦେବି ମୁଁ ସର···ଲବଣୀ,
କୋଳ କରି ବୁଲାଇବି ଗୋପ ଦାଣ୍ଡେ ପୁଣି ।।
ସୁଦାମ ମଧୁମଂଗଳ ସୁବଳ ଆସିବେ,
ଧେନୁ ବଛା ନେଇ ବୃଂଦାବନେ ସଂଗେ ଯିବେ ।।
ରୁଷିଛୁକି ରାଗିଛୁକି ନଶୁଣୁଛୁ ଡାକ,
ଯଶୋବନ୍ତୀ ଡାକୁଛନ୍ତି ମୋ କଳା-ମାଣିକ । (ଏକ)
ଆହା ମୋ କାହ୍ନୁ କଳା-ମାଣିକ ···
ଗୋପ ଗୋପାଳ ଏ ଆସି ଏକ ଠାବେ ମିଳି,
ନଂଦ ସାଥେ ଗୁଣୁଥାନ୍ତି କାହ୍ନୁ ଗୁଣା ବଳୀ ।।
ଦୁଃଖିନୀ ଗୋପିନୀମାନେ ଜନ୍ୟା ସ୍ତମ୍ଭ ପ୍ରାୟେ,
ଶୁନ୍ୟେ ରହି ଅପଲକ ନେତ୍ରୁ ନୀର ବହେ ।।

ଧବଳୀ ଶ୍ୟାମଳୀ ଧେନୁ ଉପରେ ଅନାଇଁ,
ଲୁହ ଝାରୁ ଥାନ୍ତି ସଦା ମ୍ଳାନ ମୁଖ ହୋଇ ।।
ଭଂଗା ଦଧି ଭଣ୍ଡ ଦେଖି ନଂଦ ଦେ ଡାକ,
ଯଶୋବନ୍ତୀ ଡ଼ାକୁ ଛନ୍ତି ମୋ କଳା-ମାଣିକ । (ଦୁଇ)

ଆହା ମୋ କାହ୍ନୁ କଳା-ମାଣିକ·—

ପୀତାମ୍ବର ମୁରଲୀ ତୋ ମୟୁର ଚଂଦ୍ରିକା,
ସମର ହଳ ଲଂଗଳ ପଡ଼ଅଛି ଏକା ।।
ଦଧି ଭଣ୍ଡେ ଦଧି ଅଛି, କାହ୍ନୁ ମୋ'ର ନାହିଁ,
ଘରେ ଘରେ ଖାଇବ କେ ଲବଣୀ ଚୋରଇ ।।
ଯଶୋଦା ବୋଲନ୍ତି, ଆଉ ନ ବାଂଧିବି ବାବୁ,
ଖାଇବୁ ସର ଲବଣୀ ବନେ ସଛେ ଯିବୁ ।।
ବାତୁଳ ପରଏ ନଂଦ ବୁଢ଼ା ଦେ ଡାକ,
ଯଶୋବନ୍ତୀ ଡାକୁଛନ୍ତି ମୋ କଳା-ମାଣିକ । (ତିନି)

ଆହା ମୋ କାହ୍ନୁ କଳା-ମାଣିକ·—



ଯୋଗାଯୋଗ :—
ସି/୧୫୧, ସେକ୍ଟର- ୧୬,
ରାଉରକେଲା- ୩

# ପ୍ରଶ୍ନ ଜାଗରେ ମନେ

● ଡାଃ କୃଷ୍ଣଚନ୍ଦ୍ର ନାୟକ

ସୂର୍ଯ୍ୟବଂଶର ଗୌରବ ରବ ଆହେ ରଘୁକୁଳ ପତି
ଲଙ୍କାର କଳୁ ବିନାଶି ରାବଣେ, ମୈଥିଳୀ ମହାସତୀ
ବୈଭବଶାଳୀ ଲଙ୍କାପତିର ଛଳନାପୂର୍ଣ୍ଣ ବାଣୀ
ଫୁଟାଇଥିବ ବା ଜାନକୀ ହୃଦୟ ସରୋବରେ କମଳିନୀ
ସନ୍ଦେହ ଭରା ମନେ
ନିର୍ଦ୍ଦୟ ହୃଦେ ସତୀଙ୍କୁ ପରୀକ୍ଷା କରାଇଲ ହୁତାଶନେ ।

ତୁମକୁ ଯେ ହରା ଶର୍ବରୀ ଝୁରିଝୁରି
ଅଶୋକବନକୁ ଶୋକେ ଭସାଇଲେ ନୟନୁ ଅଶ୍ରୁ ଝାରି
ଭାବିଲ କିପରି ସେଇ ମହାସତୀ ଭୁଲି ବନବାସୀ ବୀରେ
ମେଣ୍ଟାଇଥିବେ ପ୍ରଣୟ ପିପାସା ଦୈତ୍ୟର ବାହୁଡୋରେ ।

ତୁମ ସଙ୍ଗେ ଯେ ଚଉଦ ବରଷ କଟାଇଲେ ବନ ଘୋରେ
ରାଜସୁଖ ତେଜି ବଳ୍କଳ ପିନ୍ଧି ବହି ଜଟା ଜୁଟ ଶିରେ
ନିଶାକାଳେ ତୁମେ କୁଟୀର ମଧ୍ୟେ ବିଶ୍ରାମ ନେବାକାଳେ
ଧରି ଧନୁତୀର ପ୍ରହରୀ ପରାୟେ ଜଗି ରହୁଥିଲେ ଦ୍ୱାରେ
ତୁମପାଇଁ ତୋଳି ଆଣି ଦେଉଥିଲେ ବନୁ ସୁସ୍ୱାଦୁ ଫଳ
ଉଜାଗରେ ପୁଣି ଅନଶନେ ରହି ଚଉଦବରଷ କାଳ
କୁହ ସେ ଲକ୍ଷ୍ମଣେ କେଉଁ ପ୍ରତିଦାନ ଦେଲ
ତୁମପଦେ ସଦା ଭକ୍ତି ଯାହାର ସଂସାରେ ନାହିଁ ତୁଳ-
ତୁମେ ଯିବାଦନୁ ପାଦୁକା ତୁମର ରଖି ଯେ ସିଂହାସନେ
ସେବକ ପରାୟେ ଦେଶର ଶାସନ ଚଳାଇଲେ ତୁମ ନାମେ
ତୁମପରି ଶିରେ ବହି ଜଟାଧାର ବନ ଫଳମୂଳା ହାରେ
ତୁମ ପଥ ଚାହିଁ ଚଉଦ ବରଷ କାଟିଲେ ନନ୍ଦପୁରେ
ଶାସନର ମୋହ କରିବ ଅନ୍ଧ ପୁଣି ସେହି ଭରତରେ

ତଢଦେବ ବନେ ଫେରଇ ନ ଦେଇ ଶାସନ  ତୁମରି କରେ
ତେଣୁ ବନବାସ ଅନ୍ତେ ଅଯୋଧ୍ୟା ନଗରେ ଫେରିବା  କାଳେ
ପଠାଇ ଦୂତଙ୍କୁ ଭରତ ମତି ବୁଝିଥିଲ ରହି ଦୂରେ
କି ବାରତା ହନୁ ଦେଲା ତୁମପାଶେ କ୍ରୁଦ୍ଧ ରଘୁବୀର  ଥରେ
ସନ୍ଦେହ ଝଡ ଉଠିଥିଲା କିମ୍ବା ମନର ସରସୀ ତୀରେ
ପ୍ରଶ୍ନ ଜାଗଇ ମନେ-
କିଂପାଇଁ ତୁମ ପୟରେ ପ୍ରଣତି ଢାଳନ୍ତି ବିଶ୍ୱଜନେ ।



ଡା : କୃଷ୍ଣଚନ୍ଦ୍ର ନାୟକ
ଗଣିତ ବିଭାଗ, ରିଜିଓନାଲ ଇଂଜିନିୟରିଂ କଲେଜ୍
ରାଉରକେଲା

# ଶ୍ରୀଗୁଣ୍ଡିଚା ଦର୍ଶନ

ଗାୟକ - ଶ୍ରୀଚରଣ ପଣ୍ଡା

( ରାଗକଲ୍ୟାଣୀ )

ରାଜା ଇନ୍ଦ୍ରଦ୍ୟୁମ୍ନ  କୀର୍ତ୍ତି ମହାନ୍
ଯୁଗେ ଯୁଗେ ଶୋଭେ  ଚିର ଅମ୍ଳାନ
ନିଜ ପ୍ରାଣ ପ୍ରିୟା  ଗୁଣ୍ଡିଚ ନାମେ
ରଥ ଯାତ୍ରା କଲେ  ଶ୍ରୀ କ୍ଷେତ୍ର ଧାମେ ।
ଜନ ଦରଶନ ପାଇଁ ଯେ—
ବିଜେ ତିନି ରଥେ ପ୍ରଭୁ ହଳଧର ସୁଭଦ୍ରା ବିଶ୍ୱ ଗୋସାଇଁ ଯେ ।୧।

ଅଗଣନ ଜନ  ଶୋଭା ସାଗର
ଲୀଳା ଧତନର  ଭଂଗୀ-ଲହର ।
ଧବଳ[illegible]ମର  ଫେନିଳ-ଶୋଭା,
ଯାନ- ଅନ୍ତଯାନ  ମାନସ ଲୋଭା ।
ସତେକି ବୋଇତ ଜାଳ ଯେ—
ସମୀରଣ ତାଳେ ସିଂଧୁ ଗରଜନ ଯେସନେ ଜନ କୋଳାହଳ ଯେ ।୨।

ବାରଣ ଘୋଟକ  ଅଛନ୍ତି ହାସ,
ମଶାଲ ଶିବିର  ଲୋହିତ ଧାସ ।
ପଣ୍ଡା ପଡ଼ିହାରୀ  ଡାହୁକ ଗାନ,
ଜୟ ଜଗନ୍ନାଥ····  ମୃଦୁଳ ତାନ ।
ପଟୁଆର ମନୋହର ଯେ—
ବିଶ୍ୱ ଜନଗଣ ସମୁଦ୍ର ତରଙ୍ଗେ ତୋଳେ ମୁକତିର ସ୍ୱରଯେ ।୩।

ଜଗତ ଜୀବନ ସୁଭଦ୍ରା ରାମ,
ଅପୂର୍ବ ମୂରତି କି ଅନୁପମ ?
ଦରଶନେ ମିଳେ ଅକ୍ଷୟ ଧନ,
ଘୁଞ୍ଚିଯାଏ ଧରେ ବିପତ୍ତି-ଘନ ।
ସେ ରୂପରେ ସଦା ମନ ଯେ—
ବୋଲେ ଶ୍ରୀଚରଣ ଶ୍ରୀଗୁଣ୍ଡିଚ ଜନ ଏ ଗୀତ ହେଲା ରଚନ ଯେ ।୪।

★●★

# ଚାର ଗୁହାରି

ଶ୍ରୀ ଗୋକୁଳ ଚନ୍ଦ୍ର ମିଶ୍ର

'ତ' ଅନୁପ୍ରାସରେ (ରାଗ-ବସନ୍ତ ବରାଡ଼ି)

ତେଜେ ତେଜୀୟାନ ହୋଇ ଜଗନ୍ନାଥ ପିଣ୍ଡ ବ୍ରହ୍ମାଣ୍ଡେ ବ୍ୟାପିଅଛ ।
ତମ ନାଶିବାକୁ ଅସଂଖ୍ୟ ଦୀପାଳି ଜଳାଇ ନିଜେ ଜଳୁଅଛ ।
ତହିଁରେ; ବିବିଧ ରଙ୍ଗକୁ ପ୍ରକାଶି ।
ତୁମ ତେଜ ଖେଳ ତୁମେ କରୁଅଛ ସକଳ ଘଟରେ ପ୍ରବେଶି ।୧।
ତମିସ୍ରାରୁ ଖଣ୍ଡ-ବ୍ରହ୍ମ କ୍ଷିତି ବ୍ୟୋମ ପୟୋଧିରେ ତୁମେ ରଚଛ ।
ତିମିର ବିନାଶୀ ତେଜ ଅନିଳରେ ବ୍ରହ୍ମ ଧୂଳିକୁ ବିଞ୍ଚିଅଛ ।
ତହିଁରୁ; ଜନମି ପ୍ରକୃତି ପୁରୁଷ ।
ତବ ବ୍ରହ୍ମ-ଭୂତି ମିଳନର କୃତି କରି ହରୁଅଛି ମାନସ ।୨।
ତୋୟଧର ରୂପ ଧରି ଜଗନ୍ନାଥ ଅନନ୍ତ ତୋୟଧି ସୃଜଛ ।
ତୁଷାର ଫେନିଳ ସଦୃଶ ସାଗରେ ଅନନ୍ତ ଶଯ୍ୟାରେ ଶୋଇଛ ।
ତୁମରି; ତେଜେ ରବି ଶଶୀ ସୁବେଶେ
ତବ ବିଶ୍ୱଘଟେ ମଧୁରେ ପ୍ରକଟି ଋତୁ ମେଳେ ଖେଳେ ସନ୍ତୋଷେ ।୩।
ତୁମେ ପଞ୍ଚଭୂତ ଭିଆଇ ଅଦ୍ଭୁତ ଭୂତ ରୂପେ ନେତ୍ରେ ବହିଛ ।
ତତ୍ତ୍ୱଜ୍ଞ ହୋଇଣ ମଣ୍ଡଳେ ନାନାଦ ରଙ୍ଗ ପ୍ରଭକୁ ପ୍ରକାଶିଛ ।
ତପନ; ଚନ୍ଦ୍ରମା କରିଣ ସଦୃଶ ।
ତୁମ ଜ୍ୟୋତିରାଶି ସର୍ବଭୂତେ ମିଶି ତମ ନାଶି ଦିଏ ହରଷ ।୪।
ତୁମରି କରୁଣା ଲଭି ଯେଉଁ ଯଶ 'ତ' ଅକ୍ଷରେ କଲି ପ୍ରକାଶ
ତମସର ଶେଷେ ଉଷାର ପ୍ରବେଶେ ସେ ଲୀଳା ଦେଖିଛି ଅଶେଷ
ତୋଷଣ; ହୋଇବ; ଆଶେ ପୀତବାସ ।
ତୁମରି ଚରଣେ ତୁମରି ସପନ ଗୀତ ଗାଉଛି ମୂଢ଼ ଦାସ ।୫।

କ୍ୱାଟର ନଂ.— ଡି/୨୯୪; ସେକ୍ଟର-୮
ରାଉରକେଲା ୯

# ମନ ଶିକ୍ଷା

ଶ୍ରୀ ନଟବର ଦଳାଇ

ମାନସ ତୁ ନିତ୍ୟ ରଟରେ
ଅକପଟ ମୂଢ ହୃଦ ପୁଟରେ
ପୁଣ୍ୟଧାମ ଗଟ, ଯା ନାମ ପ୍ରକଟ
କାଳକୂଟ ଝିଅ ନନ୍ଦ ଘଟରେ (ପଦ)
ଜ୍ଞାନୀ ମୁନି ଧ୍ୟାନଜପାଟ, ବ୍ରଜେଶ୍ୱରୀ ଚଉଳମଟ
କିରୀଟି କିରତୀ ଶିରେ ଯେ ମୁକୁଟ
ବ୍ରହ୍ମାଣ୍ଡ ଯାହାର ଅଟେ ପେଟରେ ।୧।

ଅକଟେ ଅକାଟ ସଂକଟ, ଭବେ ବାଣ୍ଟେ ମୁକ୍ତି ପୁରଟ
କଟିତଟେ ଯାର ନବ ପୀତପଟ
ଶକଟ କଣ୍ଟକ ପଦେ ଖଟରେ ।୨।

ଝିଳହାଟ ବାଟ ବାଟୋଇ ମୋଟ ବହୁ ବୋଝ ଗୋଟେଇ
ଘଟଯିବା ବେଳ ହେଲଣି ନିକଟ
ଖଣ୍ଡ ଜନ୍ତୁରଟ ମୁଟ କାଟରେ ।୩।

ଟାଣ ଭଙ୍ଗି ଟୀକାଏ ଘେନ, ହୃଷ୍ଟମନେ ନଟ ବଚନ
ବଟପୁଟବାସୀ କୃପା କଟାକ୍ଷରେ
ଲଭବୁ ପରମ ହଂସ ଭେଟରେ ।୪



ଯଶୋବିକିରୀ, ଆଖୁଆପଦା,
ବାଲେଶ୍ୱର

# କହିବାକୁ ଲାଜ

● ଗାୟକ ଶ୍ରୀ ପ୍ରଫୁଲ୍ଲ କୁମାର ଆଚାର୍ଯ୍ୟ

ଗାୟକ ମୁଁ, କହିବାକୁ ଲଜ୍ୟା ଲାଗେ ମୋତେ
ଅଛି କିବା, ମୋ ପାଖରେ ସାହିତ୍ୟ ସମ୍ଭାର
କି ଦେଇ ପାରିବ ମୁହିଁ ସମାଜକୁ ଶିକ୍ଷା
ମନ ମଧ୍ୟେ ରଖି ଆତ୍ମ ବଡିମା କେବଳ ।୧।

ଯାଇଛନ୍ତି ଧରା ତେଜି ବରପୁତ୍ର ଗଣେ
ରଖି ଦେଇ ମହୀ ପରେ ଅକ୍ଷୟ କୀରତି
ଗାୟକ ରତନ ପୁଣି ଗାୟକ ଭୂଷଣ
ଭୁଲିକି ପାରିବ ସ୍ନେହ ମୟୀ ବସୁମତୀ ।୨।

ତୋଳି ଦେଇ ଉତ୍କଳର ସୌନ୍ଦର୍ଯ୍ୟ କୋଣାର୍କ
ଯେଉଁ ସବୁ ଧର୍ମ ପଦ ହୋଇଗଲେ ଲୀନ
ତଥା ତୋଳି ସାହିତ୍ୟର ଅପୂର୍ବ ସ୍ତବକ
ମଣି ଦେଇ ବଙ୍ଗ ଗଣେ କରିଲେ ସ୍ଥାନ ।୩।

ତାଙ୍କର ନଥିଲା ମନେ ଗର୍ବ ଅହଂକାର
ସାଜଥିଲେ ପାଲା ସଂସ୍କୃତିର ବାର୍ତ୍ତାବହ
ଚଳାନ୍ତି ଯଥା ବାହୁଡଙ୍କ ନୃପତି ସାଧନ
ସାହିତ୍ୟର ରଥ ଚଳୁଥିଲା ଅହରହ ।୪।

ଆଜ କିନ୍ତୁ ସବୁ ମନେ ପାଶ୍ଚାତ୍ୟ ସଭ୍ୟତା
ରାକ୍ଷସ ରୂପରେ ଗ୍ରାସ କରିଛି ସକଳ
ଭୁଲି ଯାଇ ନିଜ ଭଷା ଗୌରବ ଗରିମା
ପର ମୁଖା ପେନ୍ଧି ହୋଇଛନ୍ତି ହୀନ ବଳ ।୫।

ସଭ୍ୟତା ସଂସ୍କୃତି ନାମେ ଚାଲି ଅଛି ଖେଳ
ଦୂର ଦର୍ଶନ ବରବେ ପ୍ରତି ଘରେ ଘରେ
ତହିଁକି ବଂଚବ ଏହି ପ୍ରାଚୀନ ସାହିତ୍ୟ
ମନ ମଧ୍ୟେ ଭାବୁଥାଏ ବସି ନିରନ୍ତରେ । ।୬।

ଜେଲ୍ ରୋଡ
ରାଉରକେଲା- ୪

# ଦ୍ୱିଜରାମର ଜଣାଣ

ଗାୟକ – ଶ୍ରୀ ରାମଚନ୍ଦ୍ର ରଥ

---

ଘୁଞ୍ଚୁ ମୁକତି ପସର ମେଲାଇ, ଲୀଳା ଲଗାଇ
　　　ବଡେ କରିଅଛ ବେନି ଭାଇ, (ଘୋଷା)
ରତ୍ନ ସିଂହାସନେ, 　　　କେତେଦିନ ଆଉ,
　　　ନିଶ୍ଚଳେ ରହିବୁ ତୁହି,
ଡାକି ନିରିମାଖି, 　　　ହେଲି ଚକା ଆଖି,
　　　ତୋ ସେବାରେ ଦିନ ନେଇ ।୧।
ବାଇଶି ପାବଚ୍ଛ, 　　　ପଡେ ତୋର ହାଟ,
　　　ବିକା କିଣା ଲାଗିଛଇଁ,
ବ୍ରାହ୍ମଣ, ଚଣ୍ଡାଳ 　　　କୀଟ ପରିଯନ୍ତେ,
　　　ଭ୍ରାନ୍ତିକାର ଚତ୍ତେ ନାହିଁ ।୨।
ଗରିବ ମରିବ, 　　　ସରବ ସବିବ,
　　　ନିନ୍ଦାକି ନୋହିବ ତୋତେ,
ମୁକତିର ଦାତା 　　　ଅଇବୀ ନିନ୍ଦା।
　　　ମଣ୍ଡନେ ବୁଝ କିମ୍ପାଇ ।୩।
ପତିତ ପାବନ 　　　ବାନା ଉଡାଉଛ
　　　ଜଗତ ତାରିବା ପାଇଁ,
ଜାଡ ପଙ୍କେ ଷଡ଼ି 　　　ଗଲି ହେ ଶ୍ରୀହରି
　　　ତୋ ନୀତିକି ଅବୁଝଇଁ ।୪।
ତରିବାକୁ ପାପୀ 　　　ତୋ ପୁରେ ଗମନ୍ତି
　　　ପାବଛ ତଳକୁ ଯାଇଁ,
ଦ୍ୱିଜରାମ କହି, 　　　ନଶୁଣୁ କିମ୍ପାଇଁ
　　　ସାହା ମୋର କେହି ନାହିଁ ।୫।

# ବସନ୍ତ ବିଳାସ

● ଶ୍ରୀ ବୈକୁଣ୍ଠେଶ୍ୱର ପଣ୍ଡା
ଏମ୍ ଏ, (ଉତ୍କଳ)

( ରାଗ ରାମକେରୀ )

ମଳୟ ଆସିଛି ମଂଜୁଳ ଏଇ ମନ୍ଥ ତଳେ
ନିକୁଞ୍ଜ ନିଳୟେ ଗୁଞ୍ଜନ ଗୀତି ଗୋପନେ ଖେଳେ,
ସଞ୍ଜ ସକାଳରେ ଇଙ୍ଗିତକା'ର ଆସଇ ଚଳି
ସଂଗୀତମୟୀ ସୃଜନୀର ଗୀତି ଦିଏ ଅଜାଡ଼ି ।
ଚନ୍ଦନ ସୁଗନ୍ଧ ସୁରଭି ସ୍ନେହ ସରାଗେ ଲେପି
ଚମ୍ପକ କଳିକା ଅଙ୍ଗୁଳି ଋତୁ କପୋଳେ ଥାପି ।
ମଦିର ପିଆସୀ ପଞ୍ଚମ ତାନେ ସରମେ ଗୁନ୍ଥେ
ମୁକୁଳା କବରୀ ସମୀରେ ଧିରେ ଦୋହଲୁ ଥାଏ ।
ଚଞ୍ଚଳ ସୁଝୀନ ଅଞ୍ଚଳ ତା'ର ଅଧିରେ ଉଡ଼ି
କାହା ପାଇଁ ମନ ଚକୋରୀ ସତେ ମରଇ ଝୁରି ।
କଳସୀ କାଖରେ ଅଳସ ଗମନୀ କି ଛନ ଛନ
ଅରୂପ ରୂପସୀ ପୁଲକ ସ୍ପର୍ଶେ ଚହଲେ ମନ ।
ଝର ଝର ଝରେ ନିର୍ଝର ସମ ମରମ ତଳେ
କାହାପାଇଁ ଆଜ ପ୍ରଣୟ ରଚଇ ମଧୁ ବେଳେ ।
ଧରା-ସାରା ଦେଶେ ସୁନ୍ଦର ପୁଷ୍ପ ସୁରଭିମୟ
ବନବଧୂ ତଳେ କନକ ହାସ୍ୟ ଛବି ଅମୀୟ ।
ସିକ୍ତ ହୋଇ ରିକ୍ତ ହୃଦୟ କିବା ସୁଷମା ପାନେ ?
ଦୀପ୍ତ ଆଲୋକରେ ଝଲସେ ରୂପ ଝଲକ ମନେ,
ପୁଷ୍ପିତ ମନ ଗହନର ଆଶା ଗୋପନ ପୁରେ
ନିଷ୍ପେଷିତ ଏଇ ନିଶୂନ୍ ପ୍ରାଣ ପୁଲକ ଝରେ ।

ଏଚ୍/୩୫୧, ସେକ୍ଟର-୧



# ଯୌତୁକ

ଶ୍ରୀ କଲ୍ୟାଣ କୁମାର ସାହୁ
ଏମ୍ ଏ, (ଉତ୍କଳ)

( ରାଗ-ଚୋଖି )

ଆଜ ନଗରର ବାଳୀ          କରେ ଧରି ପୂଜା ଥାଳ
ପୀରତି ପ୍ରଦୀପ ଜାଳି, ସରଗ ଭରେ
ଜଗନ୍ନାଥ ପୟରେ          ଭକତିପୂତ ଚିତ୍ତରେ
ବିନୟେ ପ୍ରଣତି ଢାଳେ, ଅତି ଶ୍ରଦ୍ଧାରେ
କରୁଣ କାତରେ ଡାକଇ,
ପ୍ରାଣ ବିକିଛି ଯାହାଙ୍କୁ, ଦଇଅ ଗୋସାଇଁ ।୧।

ଦାଣ୍ଡ ସୁନ୍ଦର ଛଳନା          ତଣ୍ଡ ନେବାର ବାସନା
ଦଣ୍ଡ ଦେବାର କାମନା, ଖଳ ସ୍ୱଜନ
ଦରଣ୍ଡନ୍ତ ପରଧନ          ଦୁରସ୍ତରୀ ଅଜ୍ଞଜନ
ଦୟା ବିବେକ ବିହୀନ, ଦୂଷିତ ମନ
ଦମ୍ଭ ଅହଂକାର ଗରବ,
ଦେଖାଇ ବରର ପିତା, ଲୁଟେ ସରବ ।୨।

ଗୁମାନ କରି ଛଇଳି          ନୟନୁ ଲୋତକ ଢାଳି
କପାଳେ କର ଥାପିଣ, ତଳପ ପରେ
ଚିନ୍ତା ସାଗରେ ନିମଗ୍ନ          ତନୁ ମନ ଛନ ଛନ
ପୀଡ଼ିତା ହୋଇଛି ବାଳୀ ପୁଷ୍ପ ଶରରେ
ବିଧାତାକୁ ନିନ୍ଦେ ଚତୁରୀ
କିମ୍ପା ଜାତି ରୀତି ହୁଏ, ପ୍ରେମେ ଭଗାରୀ ।୩।

ଯଉବନ ଯଉଘରେ ପ୍ରେମାଗ୍ନି ଜଳେ ପ୍ରଖରେ
ପ୍ରୀତି କି ବଞ୍ଚବ କରେ- ଜାତି ଗୋତ୍ରରେ
ପରଶେ କିଆଁ ଲାଗଇ ହୃଦ ବନକୁ ଦହଇ
ରୀତି ନୀତି ପ୍ରୀତି ପାଶୁ, ପଳାଏ ଦୂରେ
ଅସ୍ଥିରେ ହୁଅଇ ଉତ୍ଥାନ
ପ୍ରୀତି ପରଶ ବିହୁନେ- ତନୁ ମଳନ ।୪।

ସୁଧୀଜନ ଗଣେ ଶୁଣ, ସର୍ବେ ଦୁଃଖେ ମ୍ରିୟମାଣ
କୁସଂସ୍କାର ଫଳେ ଚୂର୍ଣ ଆମ ସମାଜ
ପ୍ରଗତି ପଥ ବ୍ୟାହତ ନାନା ଦ୍ୱନ୍ଦ୍ୱ ଉପଗତ
ବିରୋଧ କର ଭରିତ ବେଦନା ବୋଝ
କଳଙ୍କେ ପସର ପୂରିତ
ଅଗ୍ନି ବର୍ଷଣେ ବହିବ ·· ଲୋହିତ ସ୍ରୋତ ।୫।

କୁତ୍ସିତ ଭବନା ତେଜ କାଳିମା ମନୁ ତରଜ
ଆଲୋକ ପଥ ସରଜ ଆନନ୍ଦେ ଚୁହ
ତରୁଣୀ ରମଣୀ ବାଣୀ ଏଅଇ ହୃଦୟ ହାଣି
ପ୍ରେମରେ ହୁଏ ବାୟାଣୀ ନିଷ୍ପତି ନିଅ
ଜାତି ଯଉତୁକ ଅନଳ
ନିର୍ବାପିତେ, ନାରୀ ଜନ୍ମ କର ସଫଳ ।୬।



ଗ୍ରାମ/ପୋ: - ବରୁଣା
ଭୟା - ଓଳାଭର, ଜି:- କଟକ

# ସାରଳା ମହାଭାରତରେ ଉତ୍କଳୀୟ ବିବାହ

⊛ ଦୀନବନ୍ଧୁ ପଣ୍ଡା

ବର୍ତ୍ତମାନର ସମୟରେ ଓଡ଼ିଆ ସାହିତ୍ୟର ଆଦ୍ୟପୁରୋଧା ଶୂଦ୍ରମୁନି କବି ସାରଳାଦାସଙ୍କୁ ସମାଲୋଚକମାନେ ଇଂରାଜୀ କବି ସେକ୍ସପିଅର, ଜର୍ମାନ କବି ଗେଟେଙ୍କ ସହିତ ତୁଳନା ନ କରି ରହିପାରନ୍ତି ନାହିଁ । ସୁଉଚ୍ଚ କଳ୍ପନା ଓ ନିରଡମ୍ବର ଭାଷାରେ ସେ ଯେଉଁ ଉତ୍କଳୀୟ ପ୍ରାଚୀନ ପରମ୍ପରାର ମିନାର ତୋଳିଥିଲେ ତାହା କେବଳ ଉତ୍କଳୀୟ ସାହିତ୍ୟରେ କାହିଁକି ସର୍ବ ଭାରତୀୟ ସାହିତ୍ୟରେ ମଧ୍ୟ ଅଦ୍ୱିତୀୟ । କୌଣସି ବର୍ଣ୍ଣନାରେ ସାରଳା ଦାସ ଯେ, ବହିଃ ପ୍ରକୃତି ଚିତ୍ରଣ କରନ୍ତି ତାହା ନୁହେଁ, ସେ ବର୍ଣ୍ଣନୀୟ ବସ୍ତୁର ଅନ୍ତଃପ୍ରକୃତିକୁ ମଧ୍ୟ କୌଣସି ସ୍ଥାନରେ ବାଦ୍ ଦେବାର ଦେଖା ଯାଇନାହିଁ । କବି ନିଜ ମହାଭାରତ କାବ୍ୟକୃତିରେ ତତ୍‌କାଳୀନ ଉତ୍କଳୀୟ ସମାଜ ଚିତ୍ର, ସଂସ୍କୃତି ତଥା ସାହିତ୍ୟକୁ ସ୍ୱତନ୍ତ୍ରାରଚୀତ୍ୱ ସରଳ ଓ ଓଜସ୍ୱିନୀ ଭାଷାରେ ପ୍ରକାଶ କରିଛନ୍ତି । ସମାଜରେ ଯେତେବେଳେ ସଂସ୍କୃତ ସାହିତ୍ୟର ପ୍ରଭାବ ଓ ପ୍ରସାର ଆକାଶ ବ୍ୟାପି ଲାଗି ରହିଥିଲା ଠିକ୍ ସେତିକି ବେଳେ ଓଡ଼ିଆ ଭାଷାରେ କାବ୍ୟ ରଚନା କରି ସେ ସାମାଜିକ ସ୍ୱୀକୃତି ପାଇବା ଯେ କମ୍ ଦୁଃସାଧ୍ୟ, ତାହା ସେ ଅଙ୍ଗେ ଲିଭାଇବାର ମଧ୍ୟ ବହୁ ପ୍ରମାଣ ଅଛି । ଓଡ଼ିଆ ଏକ ପ୍ରାନ୍ତୀୟ ଭାଷା । ଏ ଭାଷାକୁ ଉଚ୍ଚ ସ୍ଥାନର ଅଧିକାରୀ କରାଇବା ପାଇଁ କବି ଶତ ଚେଷ୍ଟା କରି ସଫଳ ହୋଇ ପାରିଛନ୍ତି ମହାଭାରତ ପରି ଏକ ମହାନ କାବ୍ୟରେ । ମୋଟ ଉପରେ ମହାଭାରତ କାବ୍ୟକୁ ବାରମ୍ବାର ଅନୁଧ୍ୟାନ କଲେ ଜଣାପଡେ ଯେ, କବି ସାରଳା ଦାସ ମହାଭାରତ ପରି ଏକ ଉତ୍କଳୀୟ କାବ୍ୟକୃତିକୁ ରଚନା କରିବା ପାଇଁ ତାଙ୍କ ପୂର୍ବ ସୂରୀମାନଙ୍କ ଠାରୁ ସେ କୌଣସି ପ୍ରେରଣା ପାଇନାହାଁନ୍ତି ।

କିନ୍ତୁ ସେ ଉତ୍କଳର ବାଗ୍‌ଦେବୀ ସାରଳାଙ୍କ ଠାରୁ କବିତ୍ୱ ଶକ୍ତି ଲାଭକରି ନଟଣ୍ୟ ସିଦ୍ଧେଶ୍ୱର ପରିଡାରୁ ସ୍ୱନାମଧନ୍ୟ କବି ସାରଳା ଦାସ ହୋଇ ପାରିଛନ୍ତି ।

'ଶ୍ରୀଚଣ୍ଡୀ ଶାରଳାଙ୍କର ପାଦତଳେ ଦାସ
ଶୂଦ୍ରମୁନି ଅପଣ୍ଡିତ ଶ୍ରୀ ସାରଳା ଦାସ
ସେ ଯାହା କହନ୍ତି ମୋତେ ମୁଁ ତାହା ଲେଖଇ
ସାଧୁ ସୁଜ୍ଞ ଜନେ ଏଥେ ମୋର ଦୋଷ ନାହିଁ ।'

ସାରଳା ଦାସଙ୍କର କେବଳ ମହାଭାରତ କାହିଁକି, ଚଣ୍ଡୀ ପୁରାଣ; ବିଲଙ୍କା ରାମାୟଣ ଆଦି କାବ୍ୟ ଦେଖିଲେ ଜଣାପଡେ ସାରଳା ଦାସ ସର୍ବତ୍ର ନିଜକୁ ମୂର୍ଖ, ଅପଣ୍ଡିତ, ଶାସ୍ତ୍ର ବୁଦ୍ଧିହୀନ କହିବା ସଙ୍ଗେ ସଙ୍ଗେ ବାଗଦେବୀ ଶାରଳାଙ୍କ କୃପାରୁ ଏସବୁ ଗ୍ରନ୍ଥ ସେ ରଚନା କରିଛନ୍ତି ବୋଲି ପ୍ରକାଶ କରିଛନ୍ତି । କିନ୍ତୁ ଏହା ନିଶ୍ଚିତ ଯେ, ବହୁ ଶାସ୍ତ୍ର ପଠନ କରିବା ପରେ ସେ ଜଣେ ବିଜ୍ଞ ଶାସ୍ତ୍ରାଦର୍ଶୀ ଓ ପଣ୍ଡିତ ହୋଇ ପାରିଥିଲେ । ସଂସ୍କୃତ ମହାଭାରତରେ ତାଙ୍କର ବହୁ ଜ୍ଞାନ ଥିଲା ଓ ଏହାକୁ ସେ ବାରମ୍ବାର ଆମୂଳଚୂଳ ପଠନ କରିଥିଲେ । ମୂଳ ସଂସ୍କୃତ ମହାଭାରତର ଶ୍ଳୋକ ସଂଖ୍ୟା ମୋଟ ଏକଲକ୍ଷ ଥିବା ସ୍ଥଳେ ଓଡ଼ିଆ ମହାଭାରତର ପଦ ସଂଖ୍ୟା ଏକଲକ୍ଷ ପଚିଶ ହଜାର ବୋଲି ଜଣାଯାଏ ।

କବି ସାରଳାଦାସ ଓଡ଼ିଆ ମହାଭାରତକୁ କେବଳ ସଂସ୍କୃତ ମହାଭାରତରୁ ଅନୁବାଦ ନକରି ନିଜସ୍ୱ ଶୈଳୀରେ ଏହା ରଚନା କରିଛନ୍ତି । ଉତ୍କଳୀୟ ଭାବଧାରା ଓ ଚିନ୍ତାଧାରା ଏଥିରେ ପର୍ଯ୍ୟବେକ୍ଷିତ । କବି ତତ୍‌କାଳୀନ ଉତ୍କଳୀୟ ସମାଜ, ଆଚାର; ବ୍ୟବହାର, କଳା, ସଂସ୍କୃତି ଆଦିକୁ ଏପରି ଭାବରେ ସନ୍ନିବେଶିତ କରି ପାରିଛନ୍ତି ଯେ, ତାହା ବିଚାର କଲେ ସେତେବେଳର ଓଡ଼ିଶା ଯେ କିପରି ଉନ୍ନତ ଥିଲା ତାହା ସ୍ପଷ୍ଟ ଜଣାପଡେ । ଉତ୍କଳୀୟ ସଂସ୍କୃତି, ପର୍ବପର୍ବାଣୀ ଆଦି ସମସ୍ତ ଚଳଣୀ ସେ ନିଜ କାବ୍ୟକୃତିରେ ପ୍ରଦର୍ଶନ କରିଛନ୍ତି । ସମାଜରେ ମନୁଷ୍ୟ କିପରି ଶୃଙ୍ଗାର ତଥା ସମ୍ଭୋଗକୁ ସାମାଜିକ ବିବାହ ଭାବରେ ବାନ୍ଧିରଖି ପାରିଛି, ତାହାହିଁ ବର୍ଣ୍ଣନାର ବିଷୟ ।

କବି ସାରଳା ଦାସଙ୍କ ପୂର୍ବବର୍ତ୍ତୀ ସମୟରେ ଉତ୍କଳୀୟ ତଥା ଭାରତୀୟ ସମାଜରେ ସହଜ ଯାନର ତାନ୍ତ୍ରିକ ସାଧନା ବଳରେ ନାରୀ ସମ୍ଭୋଗକୁ ଉଚ୍ଚ ସ୍ଥାନ ଦିଆଯାଇ ଯୌନ ଅସଂଯମ, ପର ସ୍ତ୍ରୀ ହରଣ ଓ ବ୍ୟଭିଚାର ଲୋକ

ଜୀବନରେ ଯେଉଁ ପ୍ରଭାବ ପକାଇଥିଲା ତାହାର ପ୍ରତିବାଦରେ କବି ମହାଭାରତ ଓ ଚଣ୍ଡୀ ପୁରାଣ ପରି ଯେଉଁ କାବ୍ୟ ଲେଖା ଆରମ୍ଭ କଲେ ତାହାହିଁ ପ୍ରମାଣ କରିଦେଲା ଯେ, ଉତ୍କଳୀୟମାନେ କେବଳ ନାରୀ ଜାତିକୁ ସମ୍ଭୋଗ ମଧ୍ୟକୁ ଟାଣି ନଆଣି ଜଗଜ୍ଜନନୀ ମାତୃଦେବୀ ଭାବରେ ମଧ୍ୟ ପୂଜା କରିବା ଶିଖିଛନ୍ତି ।

ବିବାହ ସାମାଜିକ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ । ପୁରୁଷ ନାରୀ ମାନଙ୍କ ସହ ଯେତେ ପ୍ରକାର ସମ୍ବନ୍ଧ ରଖିପାରେ ସେଗୁଡ଼ିକ ମଧ୍ୟରୁ ବିବାହ ଶ୍ରେଷ୍ଠ । ଏହା ଏକ ମୌଳିକ ସମ୍ବନ୍ଧ । ଏ ସମ୍ବନ୍ଧ ଏକ ସାମାଜିକ ଚଳଣି ମଧ୍ୟରେ ଆବଦ୍ଧ ରହିଥାଏ । ଏଥିପାଇଁ ସମାଜ ସ୍ୱୀକୃତି ଏକାନ୍ତ କାମ୍ୟ । ସମାଜର ସ୍ୱୀକୃତି ବିନା, ଏହା ଦୋଷାବହ ବୋଲି ଆର୍ଯ୍ୟ ସଂସ୍କୃତି କହେ । ମୋଟାମୋଟି କହିବାକୁ ଗଲେ ଠିକ ହେବ ଯେ, ବିବାହକୁ ଆର୍ଯ୍ୟ ସଂସ୍କୃତିରେ ସମାଜ ସମ୍ମତ ନର ନାରୀଙ୍କ ମିଳନ ଓ ଏକ ପାରିବାରିକ ଜୀବନ ଯାପନ ବୋଲି କୁହାଯାଏ । ସ୍ୱାମୀ ଓ ସ୍ତ୍ରୀ ଭାବରେ ନରନାରୀ ପରସ୍ପର ମଧ୍ୟରେ ନିକଟ ସମ୍ପର୍କ ରକ୍ଷାକରି ସନ୍ତାନ ସୃଷ୍ଟିକରି ବଂଶ ରକ୍ଷା କରିବା ନିତାନ୍ତ ଅପରି-ହାର୍ଯ୍ୟ । ଏହା ହିଁ ବୈବାହିକ ସମ୍ପର୍କର ମୌଳିକ ଅର୍ଥ । ଆର୍ଯ୍ୟ ଧର୍ମରେ ବିବାହ ଏକ ପବିତ୍ର ଅନୁଷ୍ଠାନ । ଥରେ ଏହି ପବିତ୍ର ଅନୁଷ୍ଠାନରେ ଯୋଗଦେଲେ ତାହା ଜୀବନସାରା ଅପରିବର୍ତ୍ତନୀୟ ରହିଥାଏ । ଭାରତୀୟ ସମାଜରେ ଏହା ଯୁଗେ ଯୁଗେ ସ୍ୱୀକୃତି ପାଇ ଆସିଛି । ହିନ୍ଦୁ ସଂସ୍କାର (ରଚନା- ରାଜବଳୀ ପାଣ୍ଡେ, ପୃଷ୍ଠା-୧୯୪) କହେ ଅବିବାହିତ ବ୍ରାହ୍ମଣ/ପୁରୁଷ କୌଣସି ଧର୍ମକାର୍ଯ୍ୟ ବା ଯଜ୍ଞାଦି କରି ପାରେନାହିଁ । ମାର୍କଣ୍ଡେୟ ପୁରାଣ ମଧ୍ୟ ସେହିପରି ମତ ଦେଇଛି । ସଂସ୍କୃତ ମହାଭାରତ ମଧ୍ୟ ପ୍ରମାଣ ଦିଏ ଯେ, ଜଗତ ପ୍ରସିଦ୍ଧ ସିଦ୍ଧ ପୁରୁଷ ଜରତ୍କାରୁ ଋଷିଙ୍କୁ ତାଙ୍କ ପିତା ବିବାହ କରିବାକୁ ପ୍ରେରଣା ଦେଇଥିଲେ ଓ ବିବାହ ଅନ୍ତେ ସନ୍ତାନ ଲାଭପରେ ପୁନଶ୍ଚ ବାନପ୍ରସ୍ଥ ଗ୍ରହଣ କରିବାକୁ ମଧ୍ୟ ପରାମର୍ଶ ଦେଇଥିଲେ । ଭାଗବତ କହେ, 'ପୁତ୍ର ନିବେଶି ପତ୍ନୀ ପାଶେ, ଅଥବା ଚଳିବ ସନ୍ନ୍ୟାସେ ।' ନାରଦ ପୁରାଣ ମଧ୍ୟ ଗୃହାସ୍ଥାଶ୍ରମକୁ ଅଗ୍ରାଧିକାର ଦେଇଛି । ଏଠାରେ ଏତିକି କୁହାଯାଇ ପାରେ, ଯେଉଁ ବିବାହ ସମାଜରେ ଏକ ମହନୀୟ ଆଦର୍ଶ ରୂପେ ଗୃହୀତ ତଥା କର୍ମମୟ ଜୀବନର ଏକ ଆବଶ୍ୟକୀୟ ଓ ମହତ୍ତ୍ୱ-ପୂର୍ଣ୍ଣ ତାହା ସାରଳାଦାସଙ୍କ ମହାଭାରତରେ ନିଶ୍ଚିତ ରୂପେ ସ୍ଥାନ ପାଇବ ଏହା

ନିଃସନ୍ଦେହ । ସାରଳାଦାସଙ୍କ କାବ୍ୟରେ ବିବାହ ଏକ ବିହିତ ସାମାଜିକ କାର୍ଯ୍ୟ ରୂପେ ପରିଗଣିତ ହେଉଥିଲା ।

ବିବାହ ପାଇଁ ପାତ୍ର-ପାତ୍ରୀ ନିର୍ବାଚନ ଏକାନ୍ତ ଆବଶ୍ୟକ । ଏଥିପାଇଁ କନ୍ୟାପିତା ହୁଅନ୍ତୁ ବା ବରପିତା ହୁଅନ୍ତୁ ପ୍ରଥମେ ପ୍ରସ୍ତାବ ପକାଇବା ସଙ୍ଗେ ସଙ୍ଗେ ପାତ୍ର ପାତ୍ରୀର ବୟସ, ରୂପ ଓ ଗୁଣର ଖବର କରନ୍ତି । ପରେ ଜାତକ ମିଳନ ହୁଏ ଓ ତତ୍‌ପରେ ବିବାହ କାର୍ଯ୍ୟ ସମ୍ପାଦିତ ହୁଏ ସଂସ୍କୃତ ମହାଭାରତରୁ ପ୍ରମାଣ ମିଳେ ଯେ, ଯୌବନ ପ୍ରବେଶ ପୂର୍ବରୁ ଅର୍ଥାତ ବାଲ୍ୟ ଅବସ୍ଥାରେ ବିବାହ କରିବା ପ୍ରୟୋଜନ । ଠିକ ଏହିପରି ମୌଳିକ ଜନମତ କହେ— 'ବର ତିରିଶା, କନିଆଁ ଦଶା ।' ଅଥଚ ସାରଳା ମହାଭାରତର କେତେକ ସ୍ଥାନରେ ବ୍ୟତିକ୍ରମ ଦେଖାଯାଏ । ମହାଭାରତରେ ବିଭିନ୍ନ ସ୍ୱୟମ୍ବର ଇତ୍ୟାଦିରୁ ପ୍ରମାଣ ମିଳେ ଯେ, କନ୍ୟା ରଜସ୍ୱଳା ହେବାର ବହୁଦିନ ପରେ ସ୍ୱୟମ୍ବର ମାଧ୍ୟମରେ ସେ ତାର ପତି ବରଣ କରିଛି ଓ ତାର ଦାମ୍ପତ୍ୟ ଜୀବନ ଅତିବାହିତ କରିବାକୁ ଆରମ୍ଭ କରିଛି । ଅର୍ଥାତ କନ୍ୟା ଦ୍ୱାଦଶ ବର୍ଷରେ ପଦାର୍ପଣ କଲେ ସେ ରଜସ୍ୱଳା କନ୍ୟାବୋଲି ଗ୍ରହଣ କରଯାଏ ଓ ତାହାର ବିବାହ ଶେଷ କରିବା ବିଧେୟ ବୋଲି ପରାଶର ମତ ଦିଅନ୍ତି । ଯଦି ପିତାମାତା ତାର ବିବାହ ଦ୍ୱାଦଶ ବର୍ଷ ମଧ୍ୟରେ ଶେଷ ନକରନ୍ତି ତେବେ କନ୍ୟାର ମାସିକ ସ୍ଖଳିତ ରଜ ପିତୃପୁରୁଷ ପାନକରନ୍ତି ବୋଲି ପ୍ରମାଣ ଅଛି । (ମନୁସ୍ମୃତି ୬-୭ ସୂକ୍ତି)

ସାରଳାଦାସଙ୍କ ମହାଭାରତ କହେ ରଜା ନିର୍ଘାତ ନିଜର କନ୍ୟା ଗଙ୍ଗାଦେବୀ ଯୁବତୀ ହେବାର ଜାଣି ସେ ତାର ବିବାହ ପ୍ରସଙ୍ଗ ଉଠାଇଛନ୍ତି । (ଆଦ୍ୟକାଣ୍ଡ ପୃଷ୍ଠ ୭) ଗାନ୍ଧାରୀ ମଧ୍ୟ ଯୌବନାବସ୍ଥାରେ ପତି ବରଣ କରିଥିବାର ପ୍ରମାଣ ମିଳେ । ଦୁଃଶୀଳା, ହାରବତୀ କନ୍ୟା, ସୁଭଦ୍ରା, ଚନ୍ଦ୍ରାବତୀ ଇତ୍ୟାଦି କନ୍ୟାମାନେ ନିଜ ନିଜର ନିର୍ବାଚିତ ପତିମାନଙ୍କ ସହ ସହବାସ କଲା ପରେ ବିବାହ ବନ୍ଧନରେ ଆବଦ୍ଧ ହୋଇଛନ୍ତି । ଏଣୁ ଏମାନେ ସହବାସ କରିବା ପୂର୍ବରୁ ରଜୋବତୀ ହୋଇଥିବାର ଯଥେଷ୍ଟ ପ୍ରମାଣ ରହିଛି । ପୁନଶ୍ଚ ମହାଭାରତରେ ମଧ୍ୟପର୍ବ (ପୃଷ୍ଠା ୨୯୧-୩୦୧), ସ୍ୱର୍ଗପର୍ବ (ପୃଷ୍ଠା ୫), ବନପର୍ବ (ପୃଷ୍ଠା ୧୯୭)ରୁ ପ୍ରମାଣ ମିଳେ ଯେ, ଯଥାକ୍ରମେ ହରିସାହୁଙ୍କ କନ୍ୟା ସୁହାଣୀ, ସଚଳାକନ୍ୟା ଓ କନ୍ୟା ତ୍ରିପୁର ମୋହିନୀ ନିଜର ଯୌବନ ପ୍ରାପ୍ତି ପରେ ବିବାହ କରିଛନ୍ତି ।

କିନ୍ତୁ ଅନ୍ୟ ଦଗରେ ସାରଳାଦାସ ମନୁସ୍ମୃତିକୁ ଅନୁଧ୍ୟାନ କରି ବାଲ୍ୟ ବିବାହକୁ ଅଗ୍ରାଧିକାର ଦେଇଛନ୍ତି ନିଜ କାବ୍ୟ ମହାଭାରତରେ । ମହାଭାରତର (ଆଦ୍ୟକାଣ୍ଡ-ପୃଷ୍ଠା ୩୬)ରୁ ପ୍ରମାଣ ମିଳେ ଯେ, ଗନ୍ଧର୍ବ ରାଜା ବ୍ୟାସଦେବଙ୍କୁ କଥା ପ୍ରସଙ୍ଗରେ କହିଥିଲେ, କନ୍ୟା ପିତାଙ୍କ ଘରେ ରଜବତୀ ହେଲେ ତାହାର ଶୋଣିତ ପିତୃଗଣଙ୍କୁ ପ୍ରାପ୍ତ ହୁଏ । ପଞ୍ଚଦଶ ଶତାବ୍ଦୀରେ ଏପରି ରଚନା ସେ ସମୟର ସମାଜରେ ନିଶ୍ଚିତ ରୂପେ କିଛି ପ୍ରଭାବ ପକାଇଥିବ । ଏଣୁ ଉତ୍କଳୀୟ ରାଜାମାନଙ୍କ ପରିବାରରେ ବାଲ୍ୟବିବାହ ରୀତି ପ୍ରଚଳିତ ଥିବାର ମଧ୍ୟ ବହୁ ପ୍ରମାଣ ଅଛି । ମହାଭାରତର ଦ୍ରୌପଦୀ ରଜୋବତୀ ହେବା ପୂର୍ବରୁ ପାଣ୍ଡବମାନଙ୍କୁ ବିବାହ କରିଥିଲେ ଓ ଉତ୍ତରା ମଧ୍ୟ ଦେହପ୍ରାପ୍ତ ବିବାହ କରି ନିଜ ପିତୃଗୃହରେ ଅବସ୍ଥାନ କରୁଥିଲେ । ମହାଭାରତ (ଆଦ୍ୟକାଣ୍ଡ ପୃଷ୍ଠା-୧୨୬) ରୁ ପ୍ରମାଣ ମିଳେ ଯେ, ଶଶିକର ବିପ୍ରର ପତ୍ନୀ ବାଳବିଧବା ରହି ସାରାଜୀବନ ଦୁଃଖ କଷ୍ଟରେ ଅତିବାହିତ କରିଥିଲା । ଏଣୁ ବ୍ରାହ୍ମଣ ସମାଜରେ ବାଲ୍ୟବିବାହ ମଧ୍ୟ ପ୍ରଚଳିତ ଥିଲା । ପୁନଶ୍ଚ ଆଉ ଏକ ଉଦାହରଣ ଦେଇ କବି ସାରଳାଦାସ କହିଛନ୍ତି—

> ମଧୁ ଶ୍ରବଣ ବୋଲିଣ ଏକଇ ବ୍ରାହ୍ମଣ
> କୁରଙ୍ଗିନୀ ବୋଲି ତା' ଭାରିଜା ନାମ
> ଜ୍ୟେଷ୍ଠ ମାସ କୃଷ୍ଣପକ୍ଷ ଅଷ୍ଟମୀର ଦିନ
> ପ୍ରଥମ ରଜୋବତୀ ସେ ହେଲା ପ୍ରିୟେ ଜାଣ ।
>
> (ବନପର୍ବ ପୃଷ୍ଠା-୩୨୦)

କେବଳ ଏତିକି ନୁହେଁ ଦାଣ୍ଡି ରାମାୟଣ (ବଳରାମ ଦାସ, ଲଙ୍କାକାଣ୍ଡ-ପୃଷ୍ଠା-୨୦୫), ହରିବଂଶ (ଅଚ୍ୟୁତାନନ୍ଦ ଦାସ ପୃଷ୍ଠା-୯୯୧)ରୁ ପ୍ରମାଣ ମିଳେ ଯେ, ଉତ୍କଳୀୟ ପରମ୍ପରା ହିଁ ବାଲ୍ୟବିବାହ ଉପରେ ପର୍ଯ୍ୟବେକ୍ଷିତ । ଏହା ଯୁବତୀ ବିବାହକୁ ନିନ୍ଦା କରେ । କିନ୍ତୁ ସାରଳାଦାସଙ୍କ ଯୁଗରେ ବାଲ୍ୟବିବାହ ଓ ଯୁବତୀ ବିବାହ ଏକତ୍ର ଚାଲିଥିବାର ବହୁ ପ୍ରମାଣ ମହାଭାରତରୁ ମିଳୁଛି ।

କେବଳ ବୟସ ଦୃଷ୍ଟିରୁ ନୁହେଁ ଯୋଗ୍ୟତା ନିରୂପଣ ମଧ୍ୟ ବିବାହର ଅନ୍ୟ ଏକ ବିଶେଷ ଅଙ୍ଗ । ଜାତି, ବର୍ଣ୍ଣ, କୁଳ, ଗୋତ୍ର; ରୂପ ଓ ଗୁଣ ଆଦି ବିଚାର କରି ପାତ୍ର-ପାତ୍ରୀ ନିର୍ବାଚନ କରାଯାଏ । କିନ୍ତୁ ମନୁ କହନ୍ତି, ଉତ୍ତମ କୁଳର ସ୍ୱଜାତୀୟ ପାତ୍ର ମିଳିଲେ କନ୍ୟା ବିବାହ ଯୋଗ୍ୟା ହୋଇ ନଥିଲେ

ବି ତାହାର ବିବାହ ସମ୍ପନ୍ନ କରିଦେବା ଉଚିତ । (ମନୁସଂହିତା ସୂକ୍ତି ୯.୮୯) ପ୍ରାଚୀନ କାଳରେ ବ୍ରାହ୍ମଣ କ୍ଷତ୍ରୀୟ କନ୍ୟା ଗ୍ରହଣ କରୁଥିବାର ବହୁ ପ୍ରମାଣ ମିଳେ । ଯଥା— ଋଷ୍ୟଶୃଙ୍ଗ (ବ୍ରାହ୍ମଣ) ଶାନ୍ତା (କ୍ଷତ୍ରୀୟା), ଋଷି ଚ୍ୟବନ (ବ୍ରାହ୍ମଣ) ସୁକନ୍ୟା (କ୍ଷତ୍ରୀୟା) ଓ କର୍ଦ୍ଦମ ଋଷି (ବ୍ରାହ୍ମଣ) ଦେବହୁତି (କ୍ଷତ୍ରୀୟା) ଇତ୍ୟାଦି । କିନ୍ତୁ ମହାଭାରତରେ ଅସବର୍ଣ୍ଣ ବିବାହର ଦୃଷ୍ଟାନ୍ତ ନାହିଁ କହିଲେ ଭୁଲହେବ । ଉଦାହରଣ ସ୍ୱରୂପ ଦେବଶ୍ରବା ପଣ୍ଡା, ଶଶିକର ବିପ୍ର, କାଶୀପତି ରଜା, କୌଶିକ ବ୍ରାହ୍ମଣ ଓ ହରିସାହୁ ବୈଶ୍ୟାଦି ସର୍ବେ ଅସବର୍ଣ୍ଣ ବିବାହର ପ୍ରମାଣ ଦିଅନ୍ତି । ପୁନଶ୍ଚ ଏହାର ବ୍ୟତିକ୍ରମ ପାଇଁ ବ୍ରାହ୍ମଣବେଶୀ ଅର୍ଜ୍ଜୁନ କ୍ଷତ୍ରୀୟା କନ୍ୟା ଦ୍ରୌପଦୀଙ୍କୁ ବିବାହ କରିଥିଲେ । କବିଙ୍କ ଭାଷାରେ—

ଅନ୍ୟାୟ କହୁଛ ତୁମ୍ଭେ ନକରି ବିଚାର
ବିଦ୍ୟାବଳେ ଜିଣିଲା ସେ ଲକ୍ଷ ଦ୍ୱିଜବର
କ୍ଷତ୍ରୀୟ କନ୍ୟାକୁ ବିଭା ହୋଇବ କେମନ୍ତେ
କାଳ କାଳକୁ ଏକଥା ରହିବ ଜଗତେ । (ଆଦିପର୍ବ ପୃଷ୍ଠା ୨୮୦)

କିନ୍ତୁ ପ୍ରକୃତ ପକ୍ଷରେ ଅର୍ଜ୍ଜୁନ କ୍ଷତ୍ରୀୟ ଥିଲେ । ହେଲେ ଅନ୍ୟ ଏକ ଦୃଷ୍ଟାନ୍ତରୁ ପ୍ରତୀୟମାନ ହୁଏ ଯେ, ଯୁଧିଷ୍ଠିର ବ୍ରାହ୍ମଣ ହୋଇ ବା କ୍ଷତ୍ରୀୟ ହୋଇ ହରିସାହୁ ବୈଶ୍ୟର କନ୍ୟା ସୁହାଣୀକୁ ବିବାହ କରିଥିଲେ । (ସ୍ୱର୍ଗପର୍ବ ପୃଷ୍ଠା-୫-୭) ଏଥିରୁ ପ୍ରମାଣ ମିଳେ ଯେ, ସାରଳଦାସଙ୍କ ଯୁଗରେ ବିବାହ ପାଇଁ ପାତ୍ର ବା ପାତ୍ରୀ ନିର୍ବାଚନ ସମୟରେ କନ୍ୟାର କୁଳ ଅପେକ୍ଷା ରୂପ ଓ ଗୁଣକୁ ପ୍ରାଧାନ୍ୟ ଦିଆଯାଉଥିଲା । ଏଣୁ ରୂପ ଓ ଗୁଣ ଥିଲେ ପାତ୍ରୀକୁ ଉଚ୍ଚକୁଳ ସମ୍ଭବା ବୋଲି ଧରାଯାଉଥିଲା । ଏହାର ପରିଚୟ ପାଇଁ ଆଦ୍ୟକାଣ୍ଡ (ପୃଷ୍ଠା-୭) ପ୍ରମାଣ ଦିଏ ଯେ, କନ୍ୟା ସୁହାଣୀର ସୁଲକ୍ଷଣ ହିଁ ଯୁଧିଷ୍ଠିରଙ୍କୁ ଆକୃଷ୍ଟ କରିଥିଲା ଓ ଏହା କବିଙ୍କ ଭାଷାରେ, 'ଯାଚିଦେଲା ଯେବେ ସର୍ବ ସୁଲକ୍ଷଣା ବାଳୀ' ଇତ୍ୟାଦି । ସେ ଯାହାହେଉ ନା କାହିଁକି ସାରଳା ମହାଭାରତରେ କବି ସାରଳାଦାସ ଋଷିଶ୍ରେଷ୍ଠ ମନୁଙ୍କ ନୀତିକୁ ଅବଲମ୍ବନ କରି ଅସବର୍ଣ୍ଣ ବିବାହକୁ ମଧ୍ୟ ଗୁରୁତ୍ୱ ଦେଇଛନ୍ତି ।

ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ମାନେ ମାତୁଳ କନ୍ୟାକୁ ବିବାହ କରୁନଥିଲେ । କିନ୍ତୁ ପୁରାଣରୁ ମିଳୁଥିବା ବହୁ ପ୍ରମାଣ ଯେ; ରଜା ଶିଶୁପାଳ ସ୍ୱୀୟ ମାତୁଳ କନ୍ୟା ଭଦ୍ରାଙ୍କୁ, ସହଦେବ ମାତୁଳ ମଦ୍ରରାଜାଙ୍କ କନ୍ୟା ବିଜୟାଙ୍କୁ ଓ ପ୍ରଦ୍ୟୁମ୍ନ ନିଜର ମାତୁଳ କନ୍ୟାକୁ ବିବାହ କରିଥିଲେ । କବି ସାରଳା ଦାସ

ଉତ୍କଳୀୟ ପରମ୍ପରାନୁଯାୟୀ ଏସବୁ ବିଷୟକୁ ନିଜ ମହାଭାରତ ମଧ୍ୟକୁ ନେଇ-ନାହାନ୍ତି । କବି ସାରଳା ଦାସଙ୍କ ସମୟରେ କେବଳ ଯେ; ପାତ୍ରୀର ଗୁଣ ଓ ବଂଶ ଦେଖା ଯାଇ କନ୍ୟା ନିର୍ବାଚନ କରାଯାଉ ଥିଲା ତାହା ନୁହେଁ, ପାତ୍ରର ଗୁଣ ଓ ଚରିତ୍ର ମଧ୍ୟ ବିଚାର କରାଯାଉଥିଲା । ଜୟଦ୍ରଥ, ପ୍ରକୃତରେ ଧାର୍ମିକ, ବିବେକୀ ଓ ବୀର ଥିବାରୁ ଦୁର୍ଯ୍ୟୋଧନ ତାଙ୍କ ହସ୍ତରେ ନିଜର ଭଗ୍ନୀ ଦୁଃଶୀଳାକୁ ସମର୍ପଣ କରିଥିଲେ । ପୁନଶ୍ଚ ମଧ୍ଯ କିଶୋର ରଜା ମଧ୍ୟ ଶିଖଣ୍ଡିର ଚରିତ୍ରକୁ ବିଚାର କରି ନିଜର କନ୍ୟାକୁ ତାଙ୍କ ହାତରେ ଟେକି ଦେଇଥିଲେ । କବି ନିଜ କାବ୍ୟ ମହାଭାରତର ଆଦୀକାଣ୍ଡ [ପୃଷ୍ଠା-୩୫]ରେ କୁହନ୍ତି ଗାନ୍ଧାରସେନଙ୍କ କନ୍ୟା ଗାନ୍ଧାରୀ ଅମାବାସ୍ୟା ତିଥିରେ ଜନ୍ମ ହୋଇଥିବାରୁ ସେ ଉଆଁସୀକନ୍ୟା ହେଲେ । କବିଙ୍କ ଭାଷାରେ —

ଜ୍ୟେଷ୍ଠ ମାସ କୃଷ୍ଣପକ୍ଷ ଅମାବାସ୍ୟା ରାତି,
କୃତ୍ତିକା ନକ୍ଷତ୍ର ହେତୁ ହେଲା ଉତପତ୍ତି ।

ଏପରି କନ୍ୟାର ପାଣି ଗ୍ରହଣ କଲେ, ପୁରୁଷର ମୃତ୍ୟୁ ହୁଏ ବୋଲି କବି ମହାଭାରତରେ ବର୍ଣ୍ଣନା ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି ଓ ଏହା ମଧ୍ୟ ଅଦ୍ୟାବଧି ଲୋକ ବିଶ୍ୱାସ ହୋଇ ରହି ଆସିଛି ।

ପୁନଶ୍ଚ କହିବାକୁ ଗଲେ କବି ସାରଳା ଦାସ ମହାଭାରତରେ ଯେଉଁ ବିବାହକୁ ଏକ ସାମାଜିକ ବନ୍ଧନ ବୋଲି ବର୍ଣ୍ଣନା କରିଛନ୍ତି ତାହାର ଅନ୍ତେ ପାତ୍ର ପାତ୍ରୀ ନିର୍ବାଚନ, ବୟସ ବିଚାର, ପାତ୍ର ତଥା ପାତ୍ରୀଙ୍କ ଯୋଗ୍ୟତା ନିରୂପଣ, କନ୍ୟାର ଜନ୍ମ ସମୟ ନିରୂପଣ, ଜାତକ ବିଧି ବିଚାର, ପ୍ରସ୍ତାବ ଆନୟନ, ନିର୍ବନ୍ଧ ଇତ୍ୟାଦରେ ବିବାହର ଦିନ ନିର୍ଣ୍ଣୟ ଓ ପରେ ପରେ ଆୟୋଜନ ତଥା ମଙ୍ଗଳକର୍ମ ଇତ୍ୟାଦ ବର୍ଣ୍ଣନା କରିଛନ୍ତି । ବୈଶ୍ୟହରି ସାହୁ ସ୍ୱୀୟ କନ୍ୟା ସୁହାଣୀର ବିବାହ ନିମିତ୍ତ ଉଦ୍ଦାଳକ ନାମକ ଗଣକଙ୍କ ସାହାଯ୍ୟ ଓ ଦ୍ରୌପଦୀଙ୍କ ବିବାହ ସମୟରେ ବର୍ଦ୍ଧମାନଙ୍କ ଦ୍ୱାରା ଦିନ, ବାର, ତିଥି ଓ ନକ୍ଷେତ୍ର ନିର୍ଣ୍ଣୟ ଏହାର ଯଥେଷ୍ଟ ପ୍ରମାଣ । କେବଳ ଏତିକି ନୁହେଁ ବିବାହ ପାଇଁ ବେଦୀ ସ୍ଥାପନ, ବନ୍ଧୁ ନିମନ୍ତ୍ରଣ, ମଙ୍ଗଳକୃତ୍ୟ କାର୍ଯ୍ୟାଦ ମହାଭାରତରେ ସ୍ପଷ୍ଟ ବର୍ଣ୍ଣନା କରା ଯାଇଛି । କବି ଉତ୍କଳୀୟ ସାମାଜିକ ବିବାହ ଚିତ୍ରକୁ ଯେପରି ନିଖୁଣ ଭାବରେ ଚିତ୍ରିତ କରିଛନ୍ତି ତାହା ବାସ୍ତବରେ ହୃଦୟସ୍ପର୍ଶୀ ହୋଇ ପାରିଛି ।

ବିବାହ ସମୟରେ ବର ଓ କନ୍ୟାକୁ କିପରି ଭାବରେ କର୍ମ-କର୍ମ ଶ୍ରେଣୀ କରିବାକୁ ପଡେ ତାହା ବର୍ଣ୍ଣନା କରିବାକୁ ଯାଇ କବି ବାଡୁଅ ସ୍ନାନ, ବରଯାତ୍ରା,

ବଣ୍ଡଗଯାଳପୂଜା, ସ୍ୱୀକରଣ ବିଧି, ବାଟବରଣ, ବାଗ୍‌ଦାନ କର୍ମ, ଗନ୍ଧାଦବାସ, କୌତୁକ ସୂତ୍ର ଧାରଣ, ବହିଃଶାଳାରୋପଣ, ମଧୁପାକ, ଷଡାର୍ଘ୍ୟକର୍ମ, କନ୍ୟା-ଦାନ, ହସ୍ତଗଣ୍ଠୀ, ଯୌତୁକ ପ୍ରଦାନ, ଦଶଦୋଷ କ୍ଷମା, ବନ୍ଦାପନା, ଲାଜାହୋମ, ପଞ୍ଚୁଗାଯୀ, ଘଟ୍ଟପାରଣ, ବର କନ୍ୟାଙ୍କୁ ସମ୍ମୁଖୀକରଣ ଓ ବାଦ୍ୟବାଜଣାଦ କାର୍ଯ୍ୟାବଳୀକୁ ଏପରି ଭାବରେ ବର୍ଣ୍ଣନା କରିଛନ୍ତି ଯେ; ତାହା ଯେପରି ଏକ ଉତ୍କଳୀୟ ପରମ୍ପରାର ମହନୀୟ ଆଦର୍ଶ ହୋଇ ରହିଛି ।

ପୁନଶ୍ଚ ବିବାହ ପରେ ଯେଉଁ ଉତ୍କଳୀୟ ବିଧିବିଧାନ ବର୍ତ୍ତମାନର ସମାଜରେ ଦେଖିବାକୁ ମିଳେ ସେତେବେଳେ ମଧ୍ୟ ତାହା ପ୍ରତିପାଳିତ ହେଉଥିଲା । ସାରଳା ମହାଭାରତରେ ଏହାର ପ୍ରମାଣ ବହୁଳ । ବିବାହ ପରେ ବର-କନ୍ୟା ବିଦାୟ, ନବ ବଧୂର ସମ୍ବର୍ଦ୍ଧନା, ଚଉଠି, ସାତ ମଙ୍ଗଳାଦି ପାଳନ ଓ ମଧୁଶଯ୍ୟାଦିର ଯାବତୀୟ ବର୍ଣ୍ଣନା କବି ସାରଳା ଦାସ ମହାଭାରତରେ ସ୍ପଷ୍ଟ କରି ଦେଇଛନ୍ତି । ଏଣୁ ପ୍ରାଚୀନ ପଞ୍ଚଦଶ ଶତାବ୍ଦୀର ଉତ୍କଳୀୟ ସାମାଜିକ ଚଳଣି ପାଇଁ ମହାଭାରତ ଏକ ଇତିହାସର ମାଇଲ୍ ଷ୍ଟୋନ୍ ଏକଥା ଅସ୍ୱୀକାର କରିବାର ନୁହେଁ ।

ଶେଷରେ କେବଳ ଏତିକି କୁହାଯାଇ ପାରେ ଯେ; ସାରଳା ମହା-ଭାରତରେ ଯେଉଁ ତତ୍କାଳୀନ ଉତ୍କଳର ସାମାଜିକ ଚଳଣି ରୂପାୟିତ ହୋଇ ପାରିଛି, ତାହା ମଣିଷ ଜୀବନର ପ୍ରଥମ ସୋପାନରୁ ମୃତ୍ୟୁ ପର୍ଯ୍ୟନ୍ତ ବା ଶେଷ ସୋପାନ ପର୍ଯ୍ୟନ୍ତ ସମସ୍ତ ରୀତି ନୀତି ଓ ଆଚାର ଆଚରଣର ସମସ୍ତ ଦୃଷ୍ଟାନ୍ତ ଏ କାବ୍ୟରେ କବି ଏକତ୍ରିତ କରିବାରେ ଯେପରି କୁଣ୍ଠିତ ହୋଇ ନାହାନ୍ତି । ମହା-ଭାରତରୁ ପ୍ରତୀୟମାନ ହୁଏ ଯେ; ପଞ୍ଚଦଶ ଶତାବ୍ଦୀରେ ଉତ୍କଳ ସମାଜ ଏକ ବିକଶିତ ସଭ୍ୟ ସମାଜସଂସ୍ଥା ଭାବରେ ଦେଖା ଦେଇଥିଲା । ଏ ଯୁଗରେ ବିବାହ ବା ଦାମ୍ପତ୍ୟ ଜୀବନ ଏକ ଶ୍ରେଷ୍ଠ ଜୀବନ ରୂପେ ପରିଗଣିତ ହୋଇପାରି ଥିଲା । କିନ୍ତୁ ଦୁଃଖର ବିଷୟ ଯେ; ସାରଳା ମହାଭାରତର ଅଦ୍ୟାବଧି ପୂର୍ଣ୍ଣାଙ୍ଗ ଆଲୋଚନା ହୋଇନାହିଁ । ଯେଉଁ କେତେ ଖଣ୍ଡ ଆଲୋଚନା ପୁସ୍ତକ ସାରଳା ଦାସଙ୍କ ଉପରେ ପ୍ରକାଶିତ ହୋଇଛି ତାହା ସମୁଦ୍ରକୁ ଶଙ୍ଖେ ପରି । ଏଣୁ କୁହାଯାଇ ପାରେ ଯେ; ଉତ୍କଳୀୟ ଭାବଧାରା ଓ ଉତ୍କଳୀୟ ଚଳଣୀ ପାଇଁ ମହାଭାରତକୁ ପାଥେୟ କଲେ ଏ ଜାତି ଓ ସମାଜ ନିଶ୍ଚିତ ରୂପେ ସୁପଥଗାମୀ ହୋଇ ଉଠିବ ଏହା ନିଃସଂଦେହ ।

---

ଘର ନଂ. ଇ/୪୨୦
ସେକ୍ଟର-୧୫, ରାଉରକେଲା-୩

# ଭଂଜ ସାହିତ୍ୟରେ ପାଲାର ଭୂମିକା

● ଶ୍ରୀ ମଧୁସୂଦନ ଶତପଥୀ

ପ୍ରତିଭା ଶାଳୀ କବି ସମାଜ ଆଡକୁ ଦୃଷ୍ଟି ନିକ୍ଷେପ କଲେ ରୀତି ଯୁଗୀୟ ମହାକବି ଉପେନ୍ଦ୍ର ଭଂଜ ଆମର ପ୍ରଥମେ ଦୃଷ୍ଟି ପଥ ରୂଢ ହୁଅନ୍ତି । ଯାହାଙ୍କ ବହୁମୁଖୀ ପ୍ରତିଭା ଓ ସାମାଜିକ ଆଦର୍ଶବାଦର ବ୍ୟାପକତାକୁ ସମ୍ୟକ୍ ଭାବେ ବର୍ଣ୍ଣନା କରିବା ମଧ୍ୟ ସାଧ୍ୟାତୀତ । ତେଣୁ ଖଦ୍ୟୋତର କ୍ଷୀଣ ଲୋକ ନ୍ୟାୟରେ ସେଥିପ୍ରତି ସମ୍ୟକ ଦୃଷ୍ଟିପାତ କରଯାଉ ।

ଉପେନ୍ଦ୍ର ତତ୍‌କାଳୀନ ସଂସ୍କୃତ କବି ମାନଙ୍କର କାବ୍ୟିକ ଢାଞ୍ଚାରେ ଅନୁପ୍ରାଣିତ ହୋଇ ବିଭିନ୍ନ କାବ୍ୟାରମ୍ଭରେ ବିମଳା, ରାମ, କୃଷ୍ଣ ଓ ଜଗନ୍ନାଥ ଆଦି ବିଭିନ୍ନ ଦେବ ଦେବୀଙ୍କୁ ବନ୍ଦନା କରିଛନ୍ତି । ନୀଳାଚଳ ଧାମ ପୁରୀ ପରି ପୁଣ୍ୟ-କ୍ଷେତ୍ରର ମହିମା ମଧ୍ୟ ତାଙ୍କ କାବ୍ୟରେ ବର୍ଣ୍ଣିତ । ଯଥା-

> ସିନ୍ଧୁତଟେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରାଜ
> ସାଧୁଜନେ ଅଛିତହିଁ ବହୁତ ଆଶ୍ଚର୍ଯ୍ୟ ହେ ।
> ଯେ ଭୂମି ପ୍ରବେଶେ ବ୍ରହ୍ମହତ୍ୟା ପାପହରେ
> ସାକ୍ଷାତ ହୋଇଛି ଏ କପାଳ ମୋଚନରେ ଯେ ।
>
> ( ସୁଭଦ୍ରା ପରିଣୟ )

ଭଗବତ୍ ଆରାଧନାର ଏହା ଜ୍ୱଳନ୍ତ ନିଦର୍ଶନ । ଭଂଜ ସାହିତ୍ୟରେ ନାରୀ ପୁଣି ସବୁଠୁଁ ଦୁର୍ଲ୍ଲଭ । ତାର ନିରାପତ୍ତାର ବିପର୍ଯ୍ୟୟ ହିଁ ମାନବ ସମାଜର ଚରମ ଦୁର୍ଗତି । ଯଥା—

> ହୀର ନୀଳା ମୁକୁତା ମାଣିକ୍ୟ ବିଦ୍ରୁମର
> ମୂଲ୍ୟ ଅଛି ମୂଲ୍ୟ ନାହିଁ ନାରୀ ରତନର ( ଲାବଣ୍ୟବତୀ )

ପୁଣି-          ପରଦ୍ରବ୍ୟ ପରସ୍ତ୍ରୀ ହରଣକୁ
ଲେଖୁ ଶୁଭ କରି ଏଥି ମରଣକୁ          ( ଲାବଣ୍ୟବତୀ )

ତୃତୀୟତ ଭଂଜ ସାହିତ୍ୟର ନାୟକ ଓ ନାୟିକା ଅତି ଚରିତ୍ରବାନ, ସୁଶୀଳ ଓ ପରସ୍ପର ଅପୂର୍ବ ସ୍ୱର୍ଗୀୟ ସମ୍ପର୍କରେ ଆବଦ୍ଧ । ସେମାନଙ୍କର ବୈବାହିକ ତଥା ଦାମ୍ପତ୍ୟ ଜୀବନର ଅପୂର୍ବ ଜୀବନାଦର୍ଶ ଅତି ଉଚ୍ଚତର । ଯଥା—

ବିଦଗଧ ଶ୍ରୀରାମଚନ୍ଦ୍ର କହେ
ବଂଧୁ ଜୀବନ ଥିବାର ଏ ଦେହେ
ବିଳାସିନୀ ନ କରିବି ଆନକୁ
ବୋଲି ଛୁଇଁ ଦୀପ ହୁତାଶନକୁ ।          ( ବୈ. ବିଳାସ )

x     x     x     x     x

ବଇଦେହୀ କେଶୁ କାଢ଼ି କେତକୀ
ବର୍ଣ୍ଣ ଲିଖିତ ପୋଛି କସ୍ତୁରୀକି
ବଳ ନାହିଁ ଆନେ ଆଜ ଯାଏତ
ବଳାଇବ ନାହିଁ ଜନ୍ମେ ଜନ୍ମେ ମୋ ଚଉ ( ବୈ. ବିଳାସ )

ଉପେନ୍ଦ୍ରଙ୍କ ନାୟକ ଓ ନାୟିକା ମାନେ ପୁଣି ଆଶାବାଦୀ । ସେମାନେ ବିରହରେ ବ୍ୟଥିତ ନ ହୋଇ ଶେଷ ପର୍ଯ୍ୟନ୍ତ ମିଳନର ସ୍ୱାଦୁ ଗ୍ରହଣରେ ଆଶାୟୀ । ଭଂଜଙ୍କର କାବ୍ୟ କବିତାର ଏହି ସବୁ ବହୁମୁଖ ଦିଗର ଆଲୋଚନା ସହଜ ସାପେକ୍ଷ ନୁହେଁ । ତେଣୁ ତାଙ୍କର କାବ୍ୟରାଜ୍ୟରେ ଧର୍ମଧାରା, ଜୀବନାଦର୍ଶ ସାମାଜିକ ଆଦର୍ଶ, ରୂପଚର୍ଚ୍ଚା, ମିଳନରେ ମାଧୁରୀ, ଜୀବନଚିନ୍ତା ଓ ଜୀବନ ଦର୍ଶନ ଆଦି ସମସ୍ତଧାରା ବିଦ୍ୟମାନ । ତେଣୁ ଉପେନ୍ଦ୍ର ଯେ ଓଡ଼ିଆ ସାହିତ୍ୟାକାଶରେ ସୂର୍ଯ୍ୟ-ଠାରୁ ଆହୁରି ତେଜୀୟାନ୍ ଓ ବଳିଷ୍ଠ ଏହା ସର୍ବଜନ ସ୍ୱୀକାର୍ଯ୍ୟ ।

ମାତ୍ର କହିବା ବାହୁଲ୍ୟଯେ, ଉପେନ୍ଦ୍ରଙ୍କ ଏ ସମସ୍ତ ସ୍ୱର୍ଗୀୟ ସୃଷ୍ଟି ତାଳପତ୍ର ଓ ଲେଖନୀ ମୂନରେ କୁଳଜଗତର ସଙ୍କ ପରିସର ମଧ୍ୟରେ ସୀମା-ବଦ୍ଧଥିଲା । ଉପେନ୍ଦ୍ର ଯେ ଏପରି ନୈସର୍ଗିକ ଗୁଣର ଅଧିକାରୀ ଓ ତାଙ୍କର ଉଚ୍ଚାଙ୍ଗ ସାହିତ୍ୟଯେ ସୃଷ୍ଟିରେ ଅତୁଳନୀୟ ଏକଥା କାହାକୁ ଜଣା ନଥିଲା ।

ଅବଶ୍ୟ କେତେକ ମୂର୍ଖ ମେୟ ପଣ୍ଡିତଙ୍କ ନିକଟରେ ଭଂଜ ଭୀତତ ଥିଲେ ମାତ୍ର ସାଧାରଣ ବ୍ୟକ୍ତି ମ ନେ ଭଂଜଙ୍କର ଅମର ପ୍ରତିଭା ବିଷୟରେ ବିନ୍ଦୁ ବିସର୍ଗ ସୁଦ୍ଧା ଜାଣି ନଥିଲେ । ତେଣୁ ଏହି ସବୁ ସାହିତ୍ୟର ରକ୍ଷାକର୍ତ୍ତା ଓ ପ୍ରଚାରକାରୀ ମାନଙ୍କ କଥା ଚନ୍ତାକଲେ, ଆମ ଦୃଷ୍ଟିରେ ପଡ଼େ ଓଡ଼ିଶାର ଏକ ବିଦଗ୍ଧ କଳା ପାଲା । ଯାହାର ସୃଷ୍ଟି ଉପେନ୍ଦ୍ରଙ୍କ ବହୁ ପୂର୍ବରୁ ।

ସ୍କନ୍ଦ ପୁରାଣର ରେବାଖଣ୍ଡରେ ବର୍ଣ୍ଣିତ ସତ୍ୟନାରାୟଣ ପୂଜାବିଧିକୁ ଲକ୍ଷ୍ୟକରି କେତେକ ପାଲାକୁ ବୈଦିକ ଯୁଗରୁ ସୃଷ୍ଟି ବୋଲି ମତ ଦିଅନ୍ତି । ସ୍ୱନାମଧନ୍ୟ ଐତିହାସିକ ତଥା ଗବେଷକ ଡଃ ହରେକୃଷ୍ଣ ମହତାବଙ୍କ ମତ ଅନୁଯାୟୀ, 'ପାଲାର ଉତ୍ପତ୍ତି କେବେ ଓ କେଉଁଠୁ ହେଲା ତାହା ଠିକ୍ ଭାବେ କହିହେବ ନାହିଁ ।' ମୁସଲମାନ ରାଜତ୍ୱ କାଳରେ ପାଲା ପ୍ରଚଳିତ ବୋଲି ମଧ୍ୟ କେତେକ ମତ ଦିଅନ୍ତି । ମାତ୍ର ହିନ୍ଦୁ ଓ ମୁସଲମାନ ସଂସ୍କୃତିର ସମନ୍ୱୟ ଘଟି ସତ୍ୟନାରାୟଣ ପାଲା ସତ୍ୟପୀର ନାମରେ ପରିବର୍ତ୍ତିତ ହୋଇଥିବା ମଧ୍ୟ ସମ୍ଭବ ହୋଇପାରେ । ସତ୍ୟପୀର ପୂଜା ଏକ ଧର୍ମର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ କିନ୍ତୁ ସତ୍ୟନାରାୟଣ ପାଲା ଏସବୁ ସଂକୀର୍ଣ୍ଣତାକୁ ସ୍ପର୍ଶ କରିନାହିଁ । ବହୁ ବିବାଦ ସତ୍ତ୍ୱେ ପାଲା ଯେ ବହୁ ପ୍ରାଚୀନ ସାଂସ୍କୃତିକ ଅନୁଷ୍ଠାନ ଏହା ସର୍ବଜନ ସ୍ୱୀକାର୍ଯ୍ୟ । ତେଣୁ ଓଡ଼ିଶାର ଭାଷା ଓ ସଂସ୍କୃତିର ରକ୍ଷାକାରୀ ଭାବେ ପାଲାର ସ୍ଥିତି ନିଶ୍ଚୟ ତାତ୍ପର୍ଯ୍ୟପୂର୍ଣ୍ଣ ।

ପ୍ରାଚୀନ ଓଡ଼ିଶାରେ ଏକ ଅନ୍ଧକାର ଯୁଗ ଘୋଟି ରହିଥିଲା । ଛାପା-ଖାନା ଓ ବହି ଓଡ଼ିଶାବାସୀ ମାନଙ୍କ ନିମନ୍ତେ ସ୍ୱପ୍ନହୋଇ ରହିଥିଲା । କାବ୍ୟ ଓ ସାହିତ୍ୟ କ'ଣ ତାହା ସାଧାରଣ ଲୋକମାନେ ଜାଣି ନଥିଲେ । ଠିକ୍ ସେହି ସମୟରେ ପାଲା ଗାୟକ ମାନଙ୍କ କଣ୍ଠରେ ଉପେନ୍ଦ୍ରଙ୍କ ଛାନ୍ଦ ଓ ଗୀତିକବିତା ମାନ ପ୍ରତିଧ୍ୱନିତ ହେଉଥିଲା । ସେତେବେଳେ ଓଡ଼ିଶାର ଦୁଃସ୍ଥ ଜନସାଧାରଣଙ୍କ ମଧ୍ୟରେ ଶିକ୍ଷା ଦୀକ୍ଷାର ଏତେ ପ୍ରସାର ହୋଇନଥିଲା । କିନ୍ତୁ ପାଲା ଗାୟକ-ମାନେ ନିଜର ନିରବଚ୍ଛିନ୍ନ ସାଧନା ଓ ତ୍ୟାଗ ବଳରେ ଅଶିକ୍ଷିତ ଜନସାଧାରଣ ମାନଙ୍କ ନିକଟରେ ମଧ୍ୟ ଉପେନ୍ଦ୍ର ଓ ତାଙ୍କ ସାହିତ୍ୟକୁ ପରିଚିତ କରାଇ ପାରି-ଥିଲେ । ଉପେନ୍ଦ୍ରଙ୍କର ପୌରାଣିକ ଓ ବୈଦିକ ଘଟଣାବଳୀ ଉପରେ ଆଧାରିତ ବିଭିନ୍ନ କାବ୍ୟ କବିତା ଆଲୋଚନା କରି ସେମାନେ ଶ୍ରମକ୍ଳାନ୍ତ ମାନବ ପ୍ରାଣରେ ଅଫୁରନ୍ତ ଉଚ୍ଛ୍ୱାସ ସୃଷ୍ଟି କରୁଥିଲେ ।

ଗୋପବନ୍ଧୁ ଥରେ ଭଞ୍ଜଙ୍କୁ ଲକ୍ଷ୍ୟକରି କହିଥିଲେ—

ଗାଏ ତବ ଗୀତ          ସଭରେ ପଣ୍ଡିତ

ପଥେ ପାନ୍ଥ ହୃଷ୍ଟମନା

ଖଳେ ଗାଏ ଚଷା ଅନ୍ତଃପୁରେ ଯୋଷା

ନୃତ୍ୟ ରଂଗେ ବାରଙ୍ଗନା .... (ଗୋପବଂଧୁ)

ଉକ୍ତ ମତ ଭରୀଅରେ ଯଦ୍ୟ ଗୋପବନ୍ଧୁ ଭଞ୍ଜଙ୍କର କାବ୍ୟ କବିତାର ବହୁଳ ପ୍ରଚାର ଉପରେ ଗୁରୁତ୍ୱ ଆରୋପ କରିଛନ୍ତି, ତାହା କେବଳ ଗାୟକ କଣ୍ଠରେ କେତେକାଂଶରେ ସଫଳ ହୋଇଛି । ପୂର୍ବର ଗାୟକମାନେ ବହୁଳ ଭାବେ ସଂସ୍କୃତ ଶାସ୍ତ୍ରର ଅଧ୍ୟୟନ କରୁଥିଲେ । କାରଣ ସଂସ୍କୃତ ବିଶ୍ୱବ୍ୟାପକ ଓ ସେହି ଶାସ୍ତ୍ରର ଅତୁଳନୀୟ ଅଳଙ୍କାର, ଯମକ ଓ ଅର୍ଥ ତତ୍କାଳୀନ ଜନ-ସାଧାରଣଙ୍କୁ ଅଭିଭୂତ କରୁଥିଲା । ସଂସ୍କୃତ ଭାଷା ମଧ୍ୟ ତତ୍କାଳୀନ ଶିକ୍ଷାର ସୋପାନ ଥିଲା । ପୁଣି ଉପେନ୍ଦ୍ରଙ୍କ ବର୍ଣ୍ଣନା କାବ୍ୟରାଜରେ ସଂସ୍କୃତର ଅବିକଳ ଛାୟା ପ୍ରତିଫଳିତ । ସଂସ୍କୃତ ଶାସ୍ତ୍ର ଅନୁରୂପ ଅଳଙ୍କାର ଦେଇ ସେ ତାଙ୍କର ସୃଷ୍ଟିକୁ ଋଦ୍ଧିମନ୍ତ କରିଛନ୍ତି । ତେଣୁ ସଂସ୍କୃତ ପରି ଭଞ୍ଜୀୟ କାବ୍ୟକବିତାରେ ଅପୂର୍ବ ଆକର୍ଷଣ ରହିଛି । ଉପେନ୍ଦ୍ରଙ୍କ କାବ୍ୟ କବିତାକୁ ଭିତ୍ତିକରି ସେତେବେଳେ ଗାୟକମାନେ ପାଲା ପରିବେଷଣ କରୁଥିଲେ । ବୈଦେହୀଶ ବିଳାସ, ଲାବଣ୍ୟ-ବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଆଦି ବିରାଟ ଗ୍ରନ୍ଥ ମାନଙ୍କୁ ଗାୟକମାନେ କଣ୍ଠସ୍ଥ କରିଥିଲେ । ଉପେନ୍ଦ୍ରଙ୍କ ଜଟିଳ କାବ୍ୟ ଗୁଡକୁ ମଧ୍ୟ ସେମାନେ ପ୍ରାଞ୍ଜଳ ଭାବରେ ବୁଝାଇ ପାରୁଥିଲେ । ଉପେନ୍ଦ୍ରଙ୍କ ବର୍ଣ୍ଣନା ଛାନ୍ଦର ଆଲୋଚନାରେ ମାସ ମାସ ଧରି ପାଲା ଲାଗି ରହିଥିଲା ।

ଏହା ଗାୟକ ମାନଙ୍କର କମ୍ ବାଗ୍ମୀତାର ପରିଚୟ ନୁହେଁ ।

ଗାୟକମାନେ ଏହିପରି ଉପେନ୍ଦ୍ରଙ୍କ କାବ୍ୟର ମାଧୁରୀ ଚଷାଠାରୁ ଆରମ୍ଭ କରି ବାରଙ୍ଗନା ପର୍ଯ୍ୟନ୍ତ ବ୍ୟକ୍ତିମାନଙ୍କ ନିକଟରେ ପହଞ୍ଚାଇ ପାରିଥିଲେ । ତେଣୁ ଉପେନ୍ଦ୍ରଙ୍କ ପ୍ରତିଭା ଓ କାବ୍ୟ କବିତାର ପ୍ରସାର ତଥା ପ୍ରଚାର ଦିଗରେ ଗାୟକମାନଙ୍କ ଅବଦାନ ନଗଣ୍ୟ ନୁହେଁ ।

ପୁଣି ପାଲାଗାୟକମାନଙ୍କର ସାମାଜିକ ଭୂମିକା କୌଣସି ଗୁଣରେ କମ୍ ନୁହେଁ । ସେମାନେ ଯେ କେବଳ ବିଭିନ୍ନ କବିମାନଙ୍କର ଭାବ୍ୟ କବିତାକୁ ଉପଜୀବ୍ୟ କରି ପାଲା ପରିବେଷଣ କରନ୍ତି ତାହା ନୁହେଁ, ସେମାନେ ମଧ୍ୟ ସ୍ୱରଚିତ କାବ୍ୟ କବିତା ଜରିଆରେ ପାଲା ପରିବେଷଣ କରନ୍ତି । ତେଣୁ ସେମାନେ ମଧ୍ୟ ଚାରଣ କବି ଭାବରେ ସମାଜରେ ପରିଚିତ ।

ପାଲାଗାୟକମାନେ ମଧ୍ୟ ବହୁ ଶାସ୍ତ୍ରାଦର୍ଶୀ । ସେମାନେ ନିଜର ଅସାଧାରଣ ବାଗ୍ମୀତା ବଳରେ ବହୁ କାବ୍ୟ କବିତା ପଢ଼ିବା ସଂଗେ ସଂଗେ ମନେ ରଖିଥାଆନ୍ତି । ତେଣୁ ପୁରାଣ ମହାଭାରତ ଓ ରାମାୟଣ ଆଦି ଗ୍ରନ୍ଥର ଜଟିଳ ପ୍ରଶ୍ନାବଳୀ ଗୁଡ଼ିକୁ ସମାଧାନ କରିବାର ଆଶା ଜନ ସାଧାରଣମାନେ ତାଙ୍କରି ଠାରେ ରଖିଥାଆନ୍ତି । ତାହା ଏପର୍ଯ୍ୟନ୍ତ ମଧ୍ୟ ରହିଛି । ଫଳତଃ ଗାୟକମାନେ ସଭାମଞ୍ଚରେ ବହୁ ପ୍ରଶ୍ନର ସମ୍ମୁଖୀନ ହେଉଛନ୍ତି । ଗାୟକମାନେ ତାଳ, ଲୟ, ମାନ ନୃତ୍ୟ ଓ ବିଭିନ୍ନ ରାଗରାଗିଣୀ ଯୁକ୍ତ ସାହିତ୍ୟ ପରିବେଷଣ କରନ୍ତି । ତାହା ପୁଣି ସଂଗୀତ ସାହିତ୍ୟ ଭଙ୍ଗଭମାଳ ଓ ବାଦ୍ୟ କଳା ଆଦିରେ ପରିପୂର୍ଣ୍ଣ ହୋଇଥାଏ । ନିରକ୍ଷର ବ୍ୟକ୍ତିମାନେ ମଧ୍ୟ ସେ ରସ ଗ୍ରହଣ କରି ଅପାର ଆନନ୍ଦଲାଭ କରନ୍ତି ।

ପ୍ରତ୍ୟେକ ଗାୟକ ଗୋଟିଏ ଗୋଟିଏ ଜ୍ଞାନର ଭଣ୍ଡାରଘର । ବେଦ, ଉପନିଷଦ, ପୁରାଣ, ରାମାୟଣ ଓ ମହାଭାରତ ଆଦି ଗ୍ରନ୍ଥରେ ଥିବା ବହୁ ଜଟିଳ ତତ୍ତ୍ୱ ସେମାନଙ୍କର ଜ୍ଞାତସାରରେ ଥାଏ । ବିଭିନ୍ନ ଗ୍ରନ୍ଥରେ ଥିବା ଚରିତ୍ରାବଳୀ ଗୁଡ଼ିକୁ ଚିତ୍ରଣ କରିବାରେ ମଧ୍ୟ ସେମାନେ ଖୁବ୍ ସିଦ୍ଧହସ୍ତ । ସେହି ଚରିତ୍ରାବଳୀର ଆଲୋଚନା ମଧ୍ୟ ସାଧାରଣ ମାନବକୁ ପ୍ରଭାବିତ କରେ । ଫଳରେ ସେମାନଙ୍କର ଚରିତ୍ର ଶୃଙ୍ଖଳିତ ହୁଏ । ତେଣୁ ପାଲାକୁ ପରୋକ୍ଷ ଭାବେ ସମାଜର ଶୃଙ୍ଖଳାକାରୀ ଓ ନିୟନ୍ତ୍ରଣକାରୀ କହିଲେ ଅତ୍ୟୁକ୍ତି ହେବନାହିଁ ।

ପାଲା ମଧ୍ୟ ଗଣ ଶିକ୍ଷାର ଏକ ମାଧ୍ୟମ । ସମାଜରେ ବହୁ ନିରକ୍ଷର ବ୍ୟକ୍ତି ଶିକ୍ଷାଦୀକ୍ଷାରୁ ବଞ୍ଚିତ । ସେପରି କର୍ମକ୍ଳାନ୍ତ ବ୍ୟକ୍ତିମାନେ ଆମୋଦ ଛଳରେ ପାଲାରୁ ବହୁ ଶିକ୍ଷା ପାଆନ୍ତି । ପାଲାର ଅସାଧାରଣ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନାରେ ଆକୃଷ୍ଟ ହୋଇ ଶିକ୍ଷିତ ଓ ଜ୍ଞାନୀ ବ୍ୟକ୍ତିମାନେ ମଧ୍ୟ ଘଣ୍ଟା

ଘଣ୍ଟା ଧରି ବସି ରହନ୍ତି । ବିଭିନ୍ନ ଘଟଣାବଳୀର ସାମାଜିକ ପ୍ରସାର ମଧ୍ୟ ପାଲା ମାଧ୍ୟମରେ ହୋଇଥାଏ । ସରକାର ମଧ୍ୟ ପାଲା ମାଧ୍ୟମରେ ବହୁ ସମ୍ବାଦ ଓ ସାମାଜିକ ମଙ୍ଗଳକାରୀ ବିବରଣୀ ଲୋକମାନଙ୍କ ମଧ୍ୟରେ ପ୍ରସାର କରଇବା ପାଇଁ ଇଚ୍ଛା ପ୍ରକାଶ କରୁଛନ୍ତି । ଏହିପରି ପାଲାର ବିଭିନ୍ନ ଦଗ ବିଷୟରେ ଆଲୋଚନା କଲେ ଜଣାଯାଏ ଯେ, ପାଲାର ସାମାଜିକ ଅବଦାନ ଯଥେଷ୍ଟ ବେଶୀ ।

ତେବେ ଯାହାହେଉ ଏହି ପାଲା ସାହିତ୍ୟ, ସଂସ୍କୃତି ଓ ପ୍ରଗତିର ରବିକାଠି ସ୍ୱରୂପ । ବଭନ୍ନ କାବ୍ୟକବିତାକୁ ଉପଜୀବ୍ୟ କରି ନିଜର ଆଜୀବନ ସାଧନା ଦ୍ୱାରା ଯେଉଁମାନେ ମାନବ ସମାଜରେ ଆଦର୍ଶ ସ୍ଥାନର ଅଧିକାରୀ । ଉପେନ୍ଦ୍ରଙ୍କ ପରି ଅଗଣିତ ଜବମାନଙ୍କର କାବ୍ୟକୃତିକୁ ବଞ୍ଚାଇ ରଖିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ସମ୍ମୁଖରେ ଯେଉଁ ଗାୟକମାନେ ତାହାକୁ ପ୍ରଚାର କରନ୍ତି, ସେମାନେ ମଧ୍ୟ ଉପେନ୍ଦ୍ରଙ୍କ ପରି ସମାନ ଆସନର ଅଧିକାରୀ କହିଲେ ଅତ୍ୟୁକ୍ତି ହେବନାହିଁ । ତେଣୁ ଜନସାଧାରଣ ଓ ସରକାର ସେମାନଙ୍କ ପ୍ରତି ନିଜର ବିହିତ କର୍ତ୍ତବ୍ୟରେ ସଚେତନ ହେବା ଉଚତ । ଏହି ବିଦଗ୍ଧ କଳା ର ସୁଦୂର ପ୍ରସାରୀ ହେଉ ଶେଷରେ ଏହାହିଁ କାମନା ।

ଘ. ନଂ. ୨୮
ଶକ୍ତିନଗର, ରାଉରକେଲା-୧୪

★●★

# ବିଜ୍ଞାପିତ ଅଞ୍ଚଳ ପରିଷଦ
# (ସହରାଞ୍ଚଳ) ର ନିର୍ବାଚିତ ପରିଷଦ

ସହରବାସୀଙ୍କ ମୌଳିକ ଆବଶ୍ୟକତା ପୂରଣ କରିବା ପକ୍ଷେ ନିମ୍ନଲିଖିତ କାର୍ଯ୍ୟମାନ ଅଗ୍ରାଧିକାର ଭିତ୍ତିରେ ସମ୍ପାଦନା ନିମନ୍ତେ ସ୍ଥିର କରିଛନ୍ତି ।

୧। ୩ ଗୋଟି ନୂତନ ଟାଉନ ବସ୍ ପ୍ରଚଳନ ।

୨। ସାଧାରଣ ପରିବେଶ ସୁରକ୍ଷା ନିମନ୍ତେ ପଥପ୍ରାନ୍ତ ବୃକ୍ଷ ରୋପଣ

୩। ସହରର ମୁଖ୍ୟ ରାସ୍ତାରେ ପଦଯାତ୍ରୀଙ୍କ ସୁବିଧା ନିମନ୍ତେ ସିମେଣ୍ଟ କଂକ୍ରିଟର ପାଦଚଲା ରାସ୍ତାନିର୍ମାଣ ।

୪। ବେଦବ୍ୟାସଠାରେ ଶବଦାହ ନିମନ୍ତେ ଶାନ୍ତଘାଟ ନିର୍ମାଣ ।

୫। ବସ୍ତି ଉନ୍ନୟନ ନିମନ୍ତେ ସହରର ମୌଳିକ ସେବା ଯୋଜନା ପ୍ରଚଳନ ।

**ନିବେଦନ —**

- ସହରରେ ଲଗାଯାଇଥିବା ଗଛ, ବିଜୁଳିବତୀ, ପାଣିକଳ, ଘଣ୍ଟାକଳ ଇତ୍ୟାଦ ଆପଣଙ୍କର ସମ୍ପତ୍ତି । ଏହାର ସୁରକ୍ଷା ଓ ସଦୁପଯୋଗ ଆପଣଙ୍କର କର୍ତ୍ତବ୍ୟ ।
- ଘରର ମଇଳା ଏଣେ ତେଣେ ନ ପକାଇ ପରିଷଦ ଦ୍ୱାର ନିର୍ଦ୍ଦିଷ୍ଟ ସ୍ଥାନ ଓ ଅଳିଆ ବାକ୍ସରେ ପକାନ୍ତୁ ।
- ସହରର ଫୁଟପାଥ ତଥା ଅନ୍ୟ ଅଞ୍ଚଳ ବେଆଇନ ଭାବେ ଦଖଲ କରନ୍ତୁ ନାହିଁ କିମ୍ବା ବିନାନୁମତିରେ ଘର ତୋଳନ୍ତୁ ନାହିଁ ।
- ପରିଷଦର ସମସ୍ତ ଦେୟ ଠିକ୍ ସମୟରେ ପୈଠ କରି ପରିଷଦକୁ ତାଙ୍କ କର୍ତ୍ତବ୍ୟ ପାଳନରେ ସାହାଯ୍ୟ କରନ୍ତୁ । ସହରର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ପାଇଁ ସମସ୍ତଙ୍କ ସାହାଯ୍ୟ ସହଯୋଗ କାମନା କରୁଅଛୁ ।

**ଶ୍ରୀ ଦଲ୍ଲୀପ କୁମାର ରାଏ**
ନଗରପାଳ

**ଶ୍ରୀ ଦେବୀ ପ୍ରସାଦ ଅଗ୍ରୱାଲ**
ଉପ-ନଗରପାଳ

**ଶ୍ରୀ ନିତ୍ୟାନନ୍ଦ ପରିଡ଼ା**
କାର୍ଯ୍ୟନିର୍ବାହୀ ଅଧିକାରୀ

Printed at Parijat Press, Gandhi Road, Rourkela-11, Ph. 3767